# ଜହ୍ନ ଜହ୍ନ ମନ

ଗୋବିନ୍ଦ ଚନ୍ଦ୍ର ଦାଶ



ପକ୍ଷୀଘର ପ୍ରକାଶନୀ

Digitized by PPRACHIN, SOA

ଜହ୍ନ ଜହ୍ନ ମନ

ଗୀତି କବିତା ସଂକଳନ

ଲେଖିକା : ଗୋବିନ୍ଦ ଚନ୍ଦ୍ର ଦାଶ

ପ୍ରକାଶକ : ପକ୍ଷୀଘର ପ୍ରକାଶନୀ
ସେକ୍ଟର-୧/୬୬, ନିଳାଦ୍ରୀ ବିହାର, ଭୁବନେଶ୍ୱର-୨୧

ପ୍ରଥମ ସଂସ୍କରଣ : ୨୦୧୭

.................................................................................................

**JAHNA JAHNA MANA**

Writer : **Gobinda Chandra Dash**
e-mail : gobind.dash@yahoo.co.in

Publisher : **Pakshighar Prakashanee**
Sec - 1/66, Niladri vihar
Bhubaneswar-21, Odisha, India
Ph. +91 94385 59778, +91 98610 10887
e-mail : pakshighara1@gmail.com

Cover : Sushil Pohan
Printed at : Aaditri Printers & Publishers pvt. Ltd.
First Edition : 2017
Price : ₹200/-

Digitized by PPRACHIN, SOA

## ଉ ତ୍ସ ର୍ଗ

ବୋଉ !

ସକାଳର ଘଡ଼ିଭାତ ଓ ସ୍କୁଲରୁ
ଫେରିଲାପରେ ଦୋଓଡ଼ା ଭାତ ସାଙ୍ଗେ
କୋଉକାଳୁ ମରିଯାଇଥିବା ବୁଟ, ଆଳୁ, କଖାରୁ ଓ
ଭୋଦେଇ ଚୁଙ୍ଗୁଡ଼ି ଛୁଙ୍କର ବାସ୍ନା ମୋ ନିଃଶ୍ୱାସ
ପ୍ରଶ୍ୱାସରେ ଏବେ ବି ଅନୁଭବ କରିପାରୁଛି ! ରାଗିଲେ
ରଷିଲେ ତୁ ପଠେଇଥିବା ଚାରେଣିଟିରେ ବି ପେଟ
ପୁରିଯାଉଥିଲା । ପିଲାଦିନେ ଅଝଟ ହେଲେ ତୋରି
କାଖରେ ଜହ୍ନ ଦେଖେଇ ଗୀତ ବୋଲି ଶୁଆଇ ଦେଉଥିଲୁ ।
ଆଜି ତୋରି ହାତରେ ତୋଳି ଦେଉଛି ସେଇସବୁ
ଗୀତରେ ସଜେଇଥିବା 'ଜହ୍ନ ଜହ୍ନ ମନ'କୁ ।

Digitized by PPRACHIN, SOA

## ପଦୁଟିଏ

ଥରିଲା ଥରିଲା ବର୍ଣ୍ଣମାଳା ଭିତରୁ କଥିତ ଅକ୍ଷର ସବୁଙ୍କୁ ସାଉଁଟି ଆଣି ଶବ୍ଦମାନଙ୍କୁ ଗଢ଼ି ଅନୁଭବର ଚଉଡ଼ା ଛାତିରେ ଆଉଜାଇ ଦେବାରେ ସୃଷ୍ଟିହୁଏ ପାଁ ଶହ ଏକପଦୀ- 'ଜହ୍ନ ଜହ୍ନ ମନ' ନାଁରେ। ଜୀବନର ବଡ଼ି ପାହାନ୍ତାରୁ ଏପର୍ଯ୍ୟନ୍ତ ଦୃଶ୍ୟମାନ ଜଗତର ପ୍ରତିଟି ପାହାଚ ଉପରେ ଆଙ୍କି ହୋଇଯାଏ ମୋ ଅନ୍ତରଙ୍ଗ ଆବେଗର ଅନ୍ତହୀନ ଅମୃତ ଅନୁଭବ। ତନ୍ମୟରୁ ହୋଇଯାଏ ବାଙ୍‌ମୟ।

ସମୟର ପଣବନ୍ଦୀଭାବେ ଅବିରତ ଚେଷ୍ଟା କରେ ଛୁଇଁବାକୁ ପରିଧି, ଶାନ୍ତସୁଧାର ସ୍ୱପ୍ନମାନଙ୍କର- ମୋ ସ୍ମୃତିର ସ୍ୱାକ୍ଷର।

- ଗୋବିନ୍ଦ ଚନ୍ଦ୍ର ଦାସ

Digitized by PPRACHIN, SOA

# ଜହ୍ନ ଜହ୍ନ ମନ ସମ୍ପର୍କରେ

ସତୀର୍ଥ **ଡ଼.ଗୋବିନ୍ଦ ଚନ୍ଦ୍ର ଦାଶ**ଙ୍କ ରଚିତ ଚାରିଖଣ୍ଡ କବିତା ପୁସ୍ତକ 'ସମୟର ସ୍ୱର', 'ଆହତ ଉପତ୍ୟକା', 'ବିବର୍ଣ୍ଣ ବସୁଧା' ଓ 'ସାଇନାମ୍ କେବଳମ୍'ରେ ସନ୍ନିବେଶିତ ସମସ୍ତ କବିତାଗୁଡ଼ିକୁ ପାଠ କରିବାର ଅବକାଶ ମୋତେ ଆଗରୁ ମିଳିଛି । କବି ଜୀବନର ବେଦନାବିଦ୍ଧ ହୃଦୟର ଆତ୍ମଲିପି ହିଁ ତ କବିତା । କବିତା କବି ପ୍ରାଣର ସ୍ୱତଃସ୍ଫୂର୍ତ୍ତ ପ୍ରବାହ ନିର୍ଝର । କବିର ଆତ୍ମମୁକ୍ତି ଗଭୀର ଅଭିଜ୍ଞତାର ଅଭିଳିପି । କବିତା ହୃଦୟର ଭାଷା ବୁଝେ, ମନର କଥା କୁହେ, ଏଣୁ କବିତା ହିଁ ଜୀବନ, ଦେହ, ମନ, ହୃଦୟ ଓ ଆତ୍ମା । କବିତା ହିଁ ପ୍ରାଣକ୍ରିୟା- ସ୍ପନ୍ଦନ, କଳ୍ପନା, ପ୍ରଯୁକ୍ତିର ତ୍ରିବେଣୀସ୍ଥଳ । ଏତିକି ଠିକ୍ ଓ ସ୍ପଷ୍ଟଭାବେ ବୁଝିଛନ୍ତି କବି ଗୋବିନ୍ଦ ଦାଶ । ମଣିଷ ମନର ସ୍ୱଚ୍ଛ ଅନୁଭୂତିଗୁଡ଼ିକୁ ବୈଚିତ୍ରମୟ ପ୍ରକାଶରେ କବି ଦାଶ ନିଜର ଦକ୍ଷତାର ତୂଳୀ ନିପୁଣତା ଓ ରଙ୍ଗ ବିଭବରେ ଆଙ୍କିଛନ୍ତି ତାଙ୍କର ସମସ୍ତ କାବ୍ୟିକ ସୃଷ୍ଟି ।

ସରକାରୀ ଚାକିରୀରୁ ଅବସର ପରେ ପ୍ରାତଃ ପଦଯାତ୍ରାରେ ଆମେ ଦୁହେଁ ପ୍ରାୟତଃ ସାହିତ୍ୟ ଚର୍ଚ୍ଚାରେ ସମୟ କଟାଉ । ତାଙ୍କ ନିଜ ରଚିତ କବିତା ଓ ଗୀତି କବିତାର ଆବୃତି ଶୁଣି ମୁଁ ଭାବବିହ୍ୱଳ ହୋଇପଡ଼େ । ଜଣେ ରସାୟନ ବିଜ୍ଞାନ ଅଧ୍ୟାପକ ଯେ ଜନ୍ମମୃତ୍ୟୁର ଜୀବନ ପରିଧିର ବ୍ୟବଧାନକୁ ଟିକିନିଖି ବିଶ୍ଳେଷଣ କରି ଓଡ଼ିଆ ସାହିତ୍ୟର କବିତା ଭଳି ରସସିକ୍ତ ବିଭାଗଟିରେ କଲମ ଚାଳନା ନିରନ୍ତର ଭାବେ କରିଆସୁଛନ୍ତି ଜାଣି ମୁଁ ବିସ୍ମିତ ହୋଇଯାଏ । ଏ ସମାଜରେ ବନ୍ଧୁ ତ ଅନେକ ଅଛନ୍ତି, ହେଲେ ଅନାବିଳ ବନ୍ଧୁତାର ପ୍ରେମାସ୍ପଦ ଭାବ ମିଳିବା ଅଧୁନା କଷ୍ଟକର ଯାହା ଆମ ଦୁହିଁଙ୍କ ଭିତରେ ଅଦ୍ୟାବଧି ରହିଛି ।

Digitized by PPRACHIN, SOA

କବିତା ହୃଦୟର ସ୍ୱତଃସ୍ଫୂର୍ତ୍ତ ଆବେଗର ଛନ୍ଦୋବଦ୍ଧ ଅଭିବ୍ୟକ୍ତି। ଏହି ଆବେଗମୟ ସ୍ୱତଃ ଗତିମୟତା ଏକଦା ଶ୍ଳୋକବଦ୍ଧ ହୋଇ ଆଦିକବିର କଣ୍ଠରୁ ଝରିପଡ଼ିଥିଲା ବିଳପିତ ବିରହ କ୍ରୌଂଚର ବେଦନାରେ। କବିତା ହିଁ ସମଗ୍ର ଜାଗତିକ ଓ ମହାଜାଗତିକ ବିଶ୍ୱକୁ ଧରି ରଖିବାକୁ ସମର୍ଥ- ଏହା ନିଃସନ୍ଦେହ। ଯେଉଁ ଭାଷାରେ କବିତା ରୂପ ବିଗ୍ରହ ଧାରଣ କରେ ତାହା ହୋଇଉଠେ କାବ୍ୟଭାଷା। ସେତେବେଳେ ଭାଷା ଓ କବିତା ଶକ୍ତିଶାଳୀ ହୋଇ ପରସ୍ପରର ପରିପୂରକ ହୋଇଯାନ୍ତି। ଗୀତକବିତା ଆମ ସାହିତ୍ୟର ଏକ କାନ୍ତ କମନୀୟ ବିଭାଗ। ଆମର ଆତ୍ମପ୍ରତ୍ୟୟ ଆସେ ଯେ ଏହା ହୃଦୟରୁ ସ୍ୱତଃ ଝରିପଡ଼ିଛି- ଯେପରି କବି ଗୋବିନ୍ଦ ଦାଶଙ୍କ ସୃଷ୍ଟିରେ।

ପବନ ଜାଣିକି ସବୁ
ରହିଛି ନୀରବ
ଶବ୍ଦ ସବୁ ବର୍ଷିଗଲେ
ଝଡ଼ ସୃଷ୍ଟି ହେବ।

ସ୍ୱପ୍ନର ସମୁଦ୍ର ଦିଶେ
ଭାରି ଭୟାନକ
ତୁମ ଦେହ ସୀମାନ୍ତରେ
ଉତାଳ ତରଙ୍ଗ।

ଗୀତକବି ଆତ୍ମନିଷ୍ଠ। ବ୍ୟକ୍ତିନିଷ୍ଠତା ହିଁ ମନ୍ମୟତା। ନିଜ କବିତାରେ କବି କହନ୍ତି ନିଜ ଅନ୍ତରର କଥା, ଆତ୍ମାନୁଭୂତିର କଥା; ସେ କଥା ହୃଦୟର କିନ୍ତୁ ତା'ର ରଙ୍ଗ ସାଗରର ନୀଳିମାରେ, କାନନିକାର ଶ୍ୟାମଳିମାରେ, ଇନ୍ଦ୍ରଧନୁର ସପ୍ତରଙ୍ଗରେ, କୃଷ୍ଣଚୂଡ଼ାର ହସରେ, ନୀଳକଇଁର ଅପରୂପ ଶୋଭାରେ। ଆତ୍ମନିଷ୍ଠତା ଗୀତିକବିତାର ସାର୍ବକାଳୀନ ପରିଚୟ। ବ୍ୟକ୍ତିକ ଚେତନା ଭିତରେ କିନ୍ତୁ ନିର୍ବ୍ୟକ୍ତିକତା ପ୍ରତିବିମ୍ବିତ ହୋଇ କାଳର ସୃଷ୍ଟିକଳାକୁ କାଳଜୟୀ କରେ। ଗୀତିକବିତାର ମୌଳିକ ବିଭବ ଚିନ୍ତା ନୁହେଁ ଅନୁଭୂତି। କବିଙ୍କ ସୃଷ୍ଟି କହେ-

ଏକା ଏକା ଆସିଛି ମୁଁ
ଏକା ଯିବି ଚାଲି
ଯେତେ ଯିଏ ସାଙ୍ଗସାଥୀ
ସବୁ ଯିବେ ଭୁଲି।

Digitized by PPRACHIN, SOA

ଚାରିଆଡ଼ ଓଦା ଓଦା
ବର୍ଷା ଅସରାଏ
ପୋଛୁ ପୋଛୁ ଆଖିପତା
ଦିନ ସରିଯାଏ ।

ସବୁଦିନ ସବୁରାତି
ସେହି ଏକାପରି
ସବୁ ସ୍ୱପ୍ନ ସବୁ ମନ
ହୁଏନି ପାଶୋରି ।

ଚମତ୍କାର କବିତ୍ୱର କମନୀୟ ଏହି ସବୁ ଅଭିବ୍ୟକ୍ତି । ଏହା ଏକ ସାର୍ଥକ ଏକପଦୀ ସଙ୍କଳନ । ଏମିତି 'ଜହ୍ନ ଜହ୍ନ ମନ'ରେ ସନ୍ନିବେଶିତ ଏକପଦୀଗୁଡ଼ିକୁ ପଢୁ ପଢୁ ହୁଏତ ପାଠକେ କେତେବେଳେ କବିତାର ସମାପ୍ତି ହୋଇଯିବ ଜାଣିପାରିବେନି । ଜୀବନର ସବୁ ପ୍ରାପ୍ତି ଅଦରକାରୀ ବୋଲି ବୁଝିବା ବେଳକୁ ଜୀବନ ଖସିଯାଇଥିବ ହାତମୁଠାରୁ ସରୁବାଲି ପରି ।

କବି ଗୋବିନ୍ଦ ଦାଶଙ୍କ ଅନ୍ତରସଂଜାତ ଭାବ, ମନକାନନର ଶ୍ୟାମଳିମା, ଚେତନାର ମୌସୁମୀ ପାଠକକୁ ନିଶ୍ଚୟ ରସସିକ୍ତ କରି ଚିନ୍ତା ଚେତନାରେ, ମଣିଷ ପଣିଆରେ ଆପ୍ଲୁତ କରିବ ତାହା ନିଃସନ୍ଦେହ ।

– ସରୋଜ ମିଶ୍ର

Digitized by PPRACHIN, SOA

# କବିତା କ୍ରମ



Digitized by PPRACHIN, SOA

## ୧

କଳ୍ପନାର କଣ୍ଠସ୍ୱର
ଖାଲି ଭଳି ଭଳି
ତମେ କିନ୍ତୁ ସେଇଭଳି
ଥିଲ ଯେଉଁପରି ।

## ୨

ଛୁଇଁବିକି ଛୁଇଁବିନି
ଭାବି ଛୁଇଁ ଦେଲି
ସ୍ୱପ୍ନଗ୍ରସ୍ତ ଆଖିକୁ ମୁଁ
ଉତ୍ତେଜିତ କଲି ।

## ୩

ଶୀତର ଶପଥ ତୋଳେ
ଲାଜର ଲହରୀ
କଥାର ବର୍ଷାରେ ଭିଜ
ସ୍ୱପ୍ନରୁ ବାହାରି ।

## ୪

ତୁମ ଆଖିରେ ଖୋଜୁଛି
ତୁମ ପରିଚୟ
ତୁମ ମୁହଁରେ ଦେଖୁଛି
ଖାଲି ଯେ ସନ୍ଦେହ ।



Digitized by PPRACHIN, SOA

୫

ଚିଠି ଖଣ୍ଡେ ପାଇବାକୁ
ଚାହିଁଅଛି ମୁହିଁ
ଯିଏ ଯେତେ ବୁଝାଇଲେ
ମନ ବୁଝୁନାହିଁ ।

୬

ଆମେ ଦୁହେଁ ପାଖାପାଖି
ଅଲଗା ମନରେ
ଉତ୍କଣ୍ଠିତ ଅହଂକାର
ନେଇକି ସାଂଗରେ ।

୭

ସ୍ୱପ୍ନର ସମୁଦ୍ର ଦିଶେ
ଭାରି ଭୟାନକ
ତୁମ ଦେହ ସୀମାନ୍ତରେ
ଉତ୍ତାଳ ତରଂଗ ।

୮

ଜରୁରୀ ସେ ଜ୍ୟୋସ୍ନାରାତି
ପ୍ରେମ ଟିକେ ପାଇଁ
ନିବିଡ଼ ସେ ଆତ୍ମୀୟତା
ଇଚ୍ଛା ଅନୁଯାୟୀ ।



Digitized by PPRACHIN, SOA

୯

ଜହ୍ନ ଯେବେ ହଜିଯାଏ
ଆକାଶ ଛାତିରେ
ପ୍ରେମ ହୁଏ ପ୍ରତାରଣା
ଶୂନ୍ୟ ସମ୍ପର୍କରେ ।

୧୦

ମରଣ ଦୁଆରୁ ଚିଠି
ଲେଖୁଛି ତୁମକୁ
ଅନାଇ ରହିଛି ତୁମ
ଚାଲି ଆସିବାକୁ ।

୧୧

ଭଲପାଅ ଭୁଲିଯାଅ
କେଡ଼େବେଗେ ସତେ
କଥାଦିଅ ବ୍ୟଥା ଦିଅ
କାହିଁ ପାଇଁ ମୋତେ ।

୧୨

ତୁମ ଦେହ ଖାଲି ଖାଲି
ବାସ୍ନା ଫୁଲ ପରି
ତୁମ ମନ ଫୁଲବନ
ରଂଗ ଭଲି ଭଲି ।



Digitized by PPRACHIN, SOA

## ୧୩

ସିନ୍ଥିରେ ସିନ୍ଦୁର ଗାର
ମଥାରେ ଟିକିଲି
ହାତରେ ଦି'ପଟ ଶଙ୍ଖା
ପିନ୍ଧାଇ ମୁଁ ଦେଲି ।

## ୧୪

ଛାଇ ଛାଇ ନିଦରେ ମୁଁ
ହୋଇଛି ବିଭୋର
ଖୋଲା ମେଲା ହୃଦୟରେ
ଆନନ୍ଦେ ଅଧୀର ।

## ୧୫

ଧୀରେ ଧୀରେ ଚାଲିଆସ
ଯେବେ ମୋ ପାଖକୁ
ଭୁଲିଯାଅ ସବୁକିଛି
ନିଜର ହେବାକୁ ।

## ୧୬

ତୁମେ ଥିବ ମୁଁ ବି ଥିବି
ଥିବ ଗୋଟେ ଜହ୍ନ
ଆକାଶରେ ଅକସ୍ମାତ
ଦେଖାହେବା ଦିନ ।



Digitized by PPRACHIN, SOA

## ୧୭

ଯାଅନା ଯାଅନା ବୋଲି
କେତେ ମୁଁ କହିଲି
ପାଖୁଡ଼ାଏ ପ୍ରେମକୁ ଯେ
ସାଥି କରିନେଲି ।

## ୧୮

ଚିଠିଟିରୁ ପଢ଼ି ହୁଏ
ହୃଦୟର ଭାଷା
ବେଳେବେଳେ ଧରାପଡ଼ି
ହୁଏ ଲୋକହସା ।

## ୧୯

ତୁମ ଦେହ ଦର୍ପଣରେ
ମୋର ଛବି ଦେଖେ
ତୁମ ମନ ଆକାଶରେ
ମେଘ ହୋଇ ଭାସେ ।

## ୨୦

ମୋ ମନଟି ଗୋପପୁର
ତୁମେ ମୋ ଯମୁନା
ମୋର ବଂଶୀସ୍ୱନ ଶୁଣି
ହୁଅ ଆନମନା ।



Digitized by PPRACHIN, SOA

୨୧

ଝରକା ସେକଡ଼େ ତୁମେ
ଲୁଚି ଲୁଚି ଦେଖ
କେମିତି ହେଉଛି ମୁହିଁ
ଏପାଖ ସେପାଖ ।

୨୨

ଜୀବନ ନଉକା ବାହି
ଆସି ଏତେବାଟ
ଭାବିଥିଲି ତୁମ ସହ
ହୋଇଯିବ ଭେଟ ।

୨୩

ତୁମେ କିନ୍ତୁ ଚାଲିଗଲ
ନକହିକି ମୋତେ
ଭଲ ପାଇ ଭୁଲିଗଲ
କେଡ଼େ ବେଗେ ସତେ ।

୨୪

ଦେହକୁ ଦେଉଳ କଲ
ଦିଅଁ ହୋଇଗଲି
ପ୍ରେମରେ ଡ଼ାକିଲ ମୋତେ
ଭକ୍ତ କରିଦେଲି ।



Digitized by PPRACHIN, SOA

୨୫

କେଉଁ ଦୁଃସାହସ ନେଇ
କଲ ପ୍ରତାରଣା
ସୀମାହୀନ ପ୍ରେମକୁ ମୋ
ଦେଲ ଯେ ଯନ୍ତ୍ରଣା ।

୨୬

ମେଘକୁ ପଚାରି କହ
ବର୍ଷାର ବୟସ
କେବେ ହେବ ପ୍ରତିକୂଳ
ପ୍ରତ୍ୟାଶାର ଶେଷ ।

୨୭

ତୁମେ ମୋର ଆଶ୍ୱାସନା
ଆସନ୍ତା କାଲିର
ତୁମେ ମୋର ସମ୍ଭାବନା
ଭଗ୍ନ ହୃଦୟର ।

୨୮

ହଳଦୀ ରଂଗର ହସ
ତୁମ ଓଠଧାରେ
ଦୁଇଟି ଶିକାର କର
ଗୋଟିଏ ଗୁଳିରେ ।



Digitized by PPRACHIN, SOA

## ୨୯

ତମ ଦେହେ ଚିରା ଶାଢ଼ୀ
ଅର୍ଶ୍ଵ ନୂଆ ଦିଶେ
ତୁମ ମୁହେଁ ହସ ଦେଖି
ଭଲପାଇ ବସେ ।

## ୩୦

ମାସ ସାରା ମନସ୍ତାପ
ଖାଲି ଯେ ହିସାବ
ପହିଲା ତାରିଖ ଦିନ
ଲାଗିଯାଏ ଭାବ ।

## ୩୧

ନୀଳ ନୀଳ ନିଦ କରେ
ନୀଳ ନିମନ୍ତ୍ରଣ
ପଦେଅଧେ କଥା ପାଇଁ
କେତେ ଯେ ବାରଣ ।

## ୩୨

ଭାରି ଭାରି ଭରସାର
ଦୃଢ଼ ପ୍ରତିଶ୍ରୁତି
ନିଦ ନିଦ ଆଖିପତା
ରଣୀଫୁଲ ରାତି ।



Digitized by PPRACHIN, SOA

୩୩

ଦୀପ ଆଲୁଅରେ ଦିଶେ
ନୂଆବୋହୂ ମୁହଁ
ଗୋଟାପାନ ପରି ମୁହଁ
ନାଲି ଟହ ଟହ ।

୩୪

ନୀଳ କଇଁ ପୋଖରୀକୁ
ରାତି ଆସିଗଲେ
ଆକାଶର ତୋଫାଜହ୍ନ
ପାଣିରେ ଚହଲେ ।

୩୫

ତୁମଠୁ ଦୂରତା ମୋର
ଯୋଜନ ଯୋଜନ
ଏଡ଼ାଇ ପାରେନି ତୁମ
ଆଶ୍ଚର୍ଯ୍ୟ ଆହ୍ୱାନ ।

୩୬

ତୁମ ଆଖି ଉହାଡ଼ରେ
ଉଦାସୀନ ଭାବ
ମୁଁ କାହିଁ ଅଝଟ ହୁଏ
ତୁମେ କି ବୁଝିବ ।



Digitized by PPRACHIN, SOA

୩୭

ଭଲ ହେଲା ଭୁଲିଗଲ
ମନୁ ଦେଲ ପୋଛି
ଫୁଲ ଶୁଖିଗଲେ
ମୁଁ ଯେ ମୃତ ମହୁମାଛି ।

୩୮

ତୁମ ଦେହ ଉତ୍ତାପରେ
ନିଶ୍ଚେ ଜଳିଯିବି
ଅତୃପ୍ତିର ହସ ନେଇ
ପଳାତକ ହେବି ।

୩୯

ତୁମର ପ୍ରେମିକ ଥିଲି
ସ୍ୱାମୀ ହୋଇଗଲି
ସାତଜନମକୁ ମୋର
ସାଥୀ କରିନେଲି ।

୪୦

ସୁନ୍ଦରପଣ ତୁମର
ଛୁଇଁବାକୁ ଗଲି
ବାହୁ ବନ୍ଧନରୁ ତୁମ
ପାରେନି ମୁକୁଳି ।



Digitized by PPRACHIN, SOA

## ୪୧

ଶେଷରାତି ପାହାନ୍ତାରେ
ଦୁଃଖ ଦୁଃଖ ମୁହଁ
ରାତି ପାହିଗଲେ ତୁମ
ଆଖିରେ ଆଲୁଅ ।

## ୪୨

କାହାପାଇଁ ବଂଚିଛି ମୁଁ
ବର୍ଷବର୍ଷ ଧରି
କେମିତି ଭୁଲିବି ତାକୁ
ଭଲ ପାଇ ସାରି ।

## ୪୩

ଫୁଲ ମୁଠେ ଫିଙ୍ଗିଦେଲେ
ତୁମ ଉପରକୁ
ଭାବନାହିଁ ଭଲପାଏ
କେବଳ ତୁମକୁ ।

## ୪୪

ଭାବନାରେ ଆସ ତମେ
ଚେତନାରେ ଥାଅ
ନିଜର ନିଜର କହି
ପର ହୋଇଯାଅ ।



Digitized by PPRACHIN, SOA

୪୫

ଢ଼ାଳିଦେବି ତୋ ଉପରେ
ସମୁଦାୟ ଲୁହ
ସବୁଦିନ ପାଇଁ ତୋଠୁ
ନେବି ମୁଁ ବିଦାୟ ।

୪୬

ବିଦାୟ ବିଦାୟ କ'ଣ
କହିଦେଲେ ହେଲା
ଆଖି ଥାଉ ଥାଉ ଅନ୍ଧ
ସତେ ହୋଇଗଲା ।

୪୭

ମଉଳିବା ଫୁଲଟିଏ
ଖସିଛି ଡ଼େମ୍ଫରୁ
କେତେ ଯେ ଖୋଜିଛି ତୋତେ
ହଜିବା ଆଗରୁ ।

୪୮

କଥା ଦେଇଥିଲ ସିନା
ହେଲେ ଆସିଲନି
ବହୁ ଖୋଜାଖୋଜି କଲି
ହେଲେ ପାଇଲିନି ।



Digitized by PPRACHIN, SOA

୪୯

ରହିଯା ରହିଯା ଟିକେ
ଯାଆନାହିଁ ଦୂରେ
ଏତେଦିନ ପରେ ତୁହି
ମିଳିଛୁ ପାଖରେ ।

୫୦

ମନରେ ତୁ ମାନ କରି
କଅଣ ପାଇଲୁ
ମନକଥା ନକହିକି
ସବୁ ସାରିଦେଲୁ ।

୫୧

ବୁନ୍ଦାଏ ଲୁହରେ ଦିଶେ
ସବୁତକ ମନ
ଦୂରରେ ଥାଇ ବି କରି
ପାରେ ଅନୁମାନ ।

୫୨

ତୁମେ ଯିବ ମୁଁ ବି ଯିବି
ଦୁନିଆରୁ ଚାଲି
ଛାତିତଳ କୋହ ସତେ
ଚୋରା ମରୁବାଲି ।



Digitized by PPRACHIN, SOA

୫୩

ତୁମେ ତ ଆସିଲ ନାହିଁ
ମୋତେ କଥା ଦେଇ
ବାଟ ଭାଂଗି ଚାଲିଗଲ
ମୋତେ ଭୁଲିଯାଇ ।

୫୪

କଥାରେ କଥାରେ ମୋତେ
ଭୁଲାଇ ଯେ ଦେଲ
ଏଇନେ ଆସୁଚ କହି
କୁଆଡ଼େ ରହିଲ ।

୫୫

ହଜିଲା ଦିନର କଥା
ସ୍ମୃତି ହୋଇରହେ
ଭିଜିଲା ରାତିର ଦେହ
ଓଦା ହୋଇଯାଏ ।

୫୬

ମୋ ଲେଖା ପଢ଼ିଲା ପରେ
ତୁମ ମୁହେଁ ହସ
ମୁଁ ଆସିଲେ ମୋ ପାଖକୁ
ଟାଣି ହୋଇଆସ ।



Digitized by PPRACHIN, SOA

## ୫୭

ରାଣଦେଇ କହୁଛି ମୁଁ
ମରିଗଲା ପରେ
ରଖିଦେବ ମୋତେ ନେଇ
ମୋ ଶୋଇଲା ଘରେ ।

## ୫୮

ଚନ୍ଦନ ବନରେ ସାପ
ଗରଜିଲା ଭଳି
ତୁମ ଛାତି ତଳ ନିଆଁ
ଯାଏ ଜଳି ଜଳି ।

## ୫୯

ତୁଠ ପଥରଟେ ହୋଇ
ମୁଁ ପଡ଼ିଛି ଚାହିଁ
କେବେ ସେ ସୁନ୍ଦରୀ ଯିବ
ଏହି ବାଟ ଦେଇ ।

## ୬୦

ହସିଦେବ ମୁର୍କି ମୁର୍କି
ଘଷିଦେବ ଗୋଡ଼
ଲାଜରେ ହୋଇବ ସିଏ
ଖାଲି ଜଡ଼ସଡ଼ ।



Digitized by PPRACHIN, SOA

୬୧

ଅସରାଏ ବର୍ଷାପରି
ଅଦିନ ମେଘରୁ
ବର୍ଷିଯିବ ଦେହସାରା
ଭଲ ପାଇବାରୁ ।

୬୨

ଭଇଁଚି କୋଳିଟେ ପାଇଁ
କେତେ ଅଳି କଲ
ତୋଳି ଦେଲି ଯେବେ କିନ୍ତୁ
ମନା କରିଦେଲ ।

୬୩

ତୁମେ ତ ବୁଝିଲ ନାହିଁ
କି ଦୁଃଖରେ ଅଛି
ମନରୁ କାହିଁକି ଦେଲ
ବିଲକୁଲ ପୋଛି ।

୬୪

ଯେଉଁଦିନ ଜାଣିଲି ମୁଁ
ତୁମ ପରିଚୟ
ନୀଳ ଆକାଶେ ଦିଶିଲ
ନୀଳ ଜହ୍ନ ପ୍ରାୟ ।



Digitized by PPRACHIN, SOA

୬୫

ମାଛି ଅଂଧାରରେ ତୁମ
ସାଂଗେ ଦେଖାହେଲା
ଜାଣି ଜାଣି ଜହ୍ନରାତି
ସତେ ଡ଼େରିକଲା ।

୬୬

ତୁମ ମୁହେଁ ଖାଲି ଦିଶେ
ହସ ଆଉ ହସ
ରାଗିଯାଅ କିଏ କଲେ
ଥଟ୍ଟା ପରିହାସ ।

୬୭

କେତେବେଳେ ଅପରାହ୍ନ
କେବେ ସଞ୍ଜ ବେଳ
ଅପେକ୍ଷାରେ ଅଛି ତୁମ
ଥିବି କାଳ କାଳ ।

୬୮

ଚିଠିପଢ଼ି ଚିରିଦିଅ
ଛାଡ଼ି ଦୀର୍ଘଶ୍ୱାସ
ମନରୁ ବି ପୋଛି ଦିଅ
ମୃତ ଇତିହାସ ।



Digitized by PPRACHIN, SOA

୬୯

ଚିଠିରେ ସୁନ୍ଦର ଦିଶେ
ତୁମ ହସ୍ତାକ୍ଷର
ରଖିଛି ସାଇତି ଚିଠି
ବିଦାୟ ବେଳାର ।

୭୦

ଗଛରୁ ଶୁଖିଲା ପତ୍ର
ଝଡ଼ିଗଲା ପରି
ମନରୁ ମୋ ନିରବତା
ଦିଅ ଚିରିଚାରି ।

୭୧

ଅଜସ୍ର ପ୍ରେମର ତୁମେ
ଶାଖା ନଦୀଟିଏ
ପରିପୂର୍ଣ୍ଣ ସାଧନାର
ସନ୍ତକ ଗୋଟିଏ ।

୭୨

କେତେ ଇଚ୍ଛା ହୁଏ ତୁମେ
ଆସନ୍ତ ଏଠାକୁ
ପୂର୍ଣ୍ଣକରି ମୋ ଭିତର
ଶୂନ୍ୟସ୍ଥାନଟିକୁ ।



Digitized by PPRACHIN, SOA

## ୭୩

ସମସ୍ତେ ମରିବେ ଦିନେ
ମୁଁ ବି ମରିଯିବି
ଭିନ୍ନଏକ ପୃଥିବୀରେ
ତୁମକୁ ଭେଟିବି ।

## ୭୪

ଭାରି ମନେପଡ଼େ ତୁମ
କାନ୍ଦ କାନ୍ଦ ମୁହଁ
ଏଡ଼େ ଅଭିମାନୀ ତୁମେ
କାହିଁ ଭଲ ପାଅ ।

## ୭୫

ତୁମେ ଥିଲ ଦୁଇଜଣ
ପ୍ରେମିକ ପ୍ରେମିକା
ହାତଛାଡ଼ି ଚାଲିଗଲ
ଦିହେଁ ଏକା ଏକା ।

## ୭୬

ବର୍ଷବର୍ଷ ବିତିଗଲା
ଖେଳ ସରିଗଲା
ଭଲ ପାଇବା ନାଆଁରେ
ଭୁଲ୍ ହୋଇଗଲା ।



Digitized by PPRACHIN, SOA

୭୭

ମୁଁ ବୁଲୁଛି ଏକା ଏକା
ନପାଇ ତୁମକୁ
ମୁଁ ନିନ୍ଦୁଛି ଖାଲି ମୋର
ଏକାକୀ ପଣକୁ ।

୭୮

ଦୂରରେ ଶୁଭୁଛି ତୁମ
ପାଦଶବ୍ଦ ମୋତେ
ତୁମେଛାଡ଼ି ଚାଲିଗଲ
ବଂଚିବି କେମନ୍ତେ ?

୭୯

ତୁମ ଆକ୍ଷି ତୁମ ଓଠ
ତୁମ ଆଖି ଧାରେ
ବଂଚିଛି ମୁଁ ବଞ୍ଚିଥିବି
ଥିବି କାଳେ କାଳେ ।

୮୦

ଭଲପାଇ ଭୁଲିଗଲ
ଚାଲିଗଲ ଦୂରେ
ମୁଁ ଭାସୁଛି ମୋ ଭାଗ୍ୟର
ମଝି ସମୁଦ୍ରରେ ।



Digitized by PPRACHIN, SOA

୮୧

ଆଖିତୁମ ଛଳ ଛଳ
ମନେ ଉଠେ କୋହ
ତଥାପି ମୁଁ ରାଗିଗଲେ
କେତେ ଯେ ବୁଝାଅ ।

୮୨

ତୁମେ ଥିଲେ ମୁହିଁ ଭାବେ
ନିଜେ ସୁରକ୍ଷିତ
ତୁମ ବିନା ମୁହିଁ ଜଣେ
ନିହାତି ଅର୍କ୍ଷିତ ।

୮୩

ଟୋପା ଟୋପା କାକରରେ
ଗଢ଼ାତମ ଦେହ
ସୂର୍ଯ୍ୟ କିରଣରେ ସଦା
ଝଟକୁଛି ମୁହଁ ।

୮୪

ଖୋଲାମେଲା ଦରଜାରେ
ପତଳା ପବନ
ଦେହରେ ମନରେ ଆଣେ
ସୁଖ ଶିହରଣ ।



Digitized by PPRACHIN, SOA

୮୫

କାହାର ଏ ବଂଶୀସ୍ୱନ
ଯମୁନା କୂଳରେ
କାହାର ଏ ରାଧା ଡାକ
ଥରିଲା ଓଠରେ ।

୮୬

ଝରକା କଡ଼ରେ ଥିବା
ଜହ୍ନ ଆଲୁଅରେ
ତୁମ ମୁହଁ ଦିଶିଯାଏ
କେବେ ଥରେ ଥରେ ।

୮୭

ଆଖି ତୁମ ଛଳ ଛଳ
ଦିଶୁଛି କାହିଁକି
ମୁଁ ନଥିଲା ବେଳେ କିଏ
କିଛି କହିଲାକି ?

୮୮

ଝାଳରେ ଓଦା ହୋଇଛି
ସର୍ବାଙ୍ଗ ଶରୀର
ମନରୁ ଲିଭିନି ଦାଗ
ଏପର୍ଯ୍ୟନ୍ତ ମୋର ।



Digitized by PPRACHIN, SOA

୮୯

ଛାଡ଼ିଦେଇ ଆସିଲି ମୁଁ
ତାକୁ ତା'ର ଘରେ
ଗୋଟିଏ ବି ତାରା ନାହିଁ
ଆଜି ଆକାଶରେ ।

୯୦

ଫୁଲପରି ଫୁଟୁଥାଅ
ଆଜୀବନ ତୁମେ
ବାସ୍ନା ତୁମ ବାଣ୍ଟୁଥାଅ
ଏହି ଧରାଧାମେ ।

୯୧

ଆଗକୁ ଚାଲଇ ରାସ୍ତା
ନସରିବା ଯାଏଁ
କାଳେ ତୁମେ ଦେଖାଦେବ
ମୋର ଭ୍ରମ ହୁଏ ।

୯୨

ତୁମେ ତ ବରଷିଗଲ
ଯିବା ବାଟ ଭାଂଗି
ମେଘ କ'ଣ କାନ୍ଦିଲାକି
ଖାଲି ତୁମ ଲାଗି ।



Digitized by PPRACHIN, SOA

## ୯୩

ଭଲକି ଜାଣିଛ ତମେ
ମୋର ପରିଚୟ
ତମ ବିନା ଜୀବନ ମୋ
ଅନ୍ଧକାରମୟ ।

## ୯୪

କେଉଁଠୁ ଆସିଲ ତମେ
କେଉଁଠାକୁ ଯିବ
ଗରଜୁଛ ଖାଲି ତମେ
କେବେ ବା ବର୍ଷିବ ।

## ୯୫

ବର୍ଷ ପରେ ବର୍ଷ ବିତେ
ସମୟ ସାମ୍ନାରେ
ଭୁଲିଯିବନି ତ ମୋତେ
ଶେଷ ସମୟରେ ।

## ୯୬

ଲାଜ କର କାହିଁ ମୋତେ
ପେଟେ ଭୋକ ଥାଇ
ମନଭରି ଖାଅ ତୁମେ
ଇଚ୍ଛା ଅନୁଯାୟୀ ।



Digitized by PPRACHIN, SOA

## ୯୭

ସକାଳ ଛାତିରେ ଯେବେ
ତୁମ ରାତି ପାହେ
ନିଘୋଡ଼ ନିଦରେ ତୁମ
ନିଆଁ ଲାଗିଯାଏ ।

## ୯୮

ବେଳକାଳ ଦେଖିଆସ
ବିବର୍ଣ୍ଣ ସଂଜରେ
ବ୍ୟସ୍ତ ଅପରାହ୍ନଟିଏ
ଯିବା ପରେ ପରେ ।

## ୯୯

ଯେଉଁଠି ବି ଥାଅ ତୁମେ
ପାଶୋରି ନଦିଅ
ଜନମ ଜନମ ସାଥୀ
ହୋଇ ରହିଥାଅ ।

## ୧୦୦

ତୁମେ ଥିଲ ନାୟିକା ମୋ
ସଂକ୍ଷିପ୍ତ ସ୍ୱପ୍ନର
ତୁମେ ଥିଲ ଅଯାଚିତ
ସ୍ନେହର ଭଣ୍ଡାର ।



Digitized by PPRACHIN, SOA

## ୧୦୧

ତୁମେ କ'ଣ ଜାଣନାହିଁ
ତୁମ ଅପେକ୍ଷାରେ
କେମିତି କଟୁଛି ଦିନ
ବଞ୍ଚି ରହିବାରେ ।

## ୧୦୨

ପ୍ରତ୍ୟେକ ଅଂଗରେ ମୋର
ଦୁଷ୍ଟ ପାଗଳାମି
ତୁମ ବିନା ଚାରିଆଡ଼
ଶୁଷ୍କ ମରୁଭୂମି ।

## ୧୦୩

ରକ୍ତ ମୋ ବରଫ ହୁଏ
ତୁମେ ଆସିଗଲେ
ତୁମ ଗାଆଁ ଶୀତ ଋତୁ
ଏଠି ଘୂରିବୁଲେ ।

## ୧୦୪

ଓଦା ତା'ର ଡ଼େଣା ଦେଖ
ଭିଜା କାକରରେ
ବେଳେବେଳେ ଲାଖି ରହେ
ମୋ ଓଠ ହସରେ ।



Digitized by PPRACHIN, SOA

୧୦୫

ପବନ ପହଁରୁଥିଲା
ତୁମ ଗାଆଁ ଦେଇ
ମେଘର ଓଢ଼ଣା ତଳେ
ମୁହଁକୁ ଲୁଚାଇ ।

୧୦୬

କେତେକାଳୁ ଦେଖାନାହଁ
କେଉଁଠି ବା ଥିଲ
ଖୋଜି ଖୋଜି ଥକିଲିଣି
ମୁଁ ଖଣ୍ଡ ମଣ୍ଡଳ ।

୧୦୭

ଆଖିତୋର ପାଣିଖରା
ପରି ଯେ ଉଜ୍ଜ୍ୱଳ
ଦୃଷ୍ଟି ତୋର ବୁଲିଆସେ
ସାରା ଭୂମଣ୍ଡଳ ।

୧୦୮

ଗୋଲାପର କଣ୍ଟା ତୁମେ
କେଡ଼େ ତୀକ୍ଷ୍ଣ ସତେ
ହୃଦୟକୁ ଛୁଉଁ ଛୁଉଁ
ଛୁଇଁଯାଅ ମୋତେ ।



Digitized by PPRACHIN, SOA

## ୧୦୯

ଦୂରରୁ ଶୁଭୁଛି ତୁମ
ମିଠା କଣ୍ଠସ୍ୱର
ଲାଜରେ ଲାଜେଇ ଯାଏ
ଭିତରଟା ମୋର ।

## ୧୧୦

ଝଡ଼ ଝଡ଼ ଲାଗେ ଆଜି
ଉଦାସ ରାତିରେ
ସବୁରାତି ଏହିପରି
ତୁମେ ଗଲା ପରେ ।

## ୧୧୧

ଅନ୍ଧାର ଓହ୍ଲେଇଗଲା
ଆଖିପତା ତଳେ
ମୁର୍କି ମୁର୍କି ହସୁଥିଲା
ଆଜି ସଂଜବେଳେ ।

## ୧୧୨

କେଉଁଠି ଲୁଚେଇ ରଖ
ମନଗଢ଼ା ସ୍ୱର
ଶୁଣିବାକୁ ସ୍ୱପ୍ନ ତୁମ
କଣ୍ଠର ଲହର ।



Digitized by PPRACHIN, SOA

୧୧୩

ରୂପା ସବାରିରେ ଦେଖ
ସୁନାର କନିଆ
ତୁମ ହାବଭାବ ଦେଖି
ଯେ କେହି ଛାନିଆ ।

୧୧୪

ତୁମ ପାଶେ ଧରାଦେଲି
ମୁକ୍ତି ନାହିଁ ମୋର
ତୁମେ ଏକ ଭଗ୍ନମନ
ଅଲୋଡ଼ା ସ୍ୱପ୍ନର ।

୧୧୫

କୋଇଲି କଣ୍ଠରେ ମିଠା
ଫଗୁଣ ଆସିଛି
ଦିନ ଦିନ ଧରି ତାକୁ
ଅପେକ୍ଷା କରିଛି ।

୧୧୬

କବାଟ ଫାଙ୍କରୁ ଜହ୍ନ
ଯେବେ ଦେଖାଦିଏ
ଅନ୍ଧାର ଭିତରୁ ତୁମ
ମୁହଁ ଦିଶିଯାଏ ।



Digitized by PPRACHIN, SOA

୧୧୭

ପଚାରନି ମୋତେ କିଛି
ତୁମ ରାଣ ଦେଇ
କେଉଁଆଡ଼େ ଯାଇଥିଲି
ତୁମକୁ ନକହି ।

୧୧୮

କାହା ଡ଼ାକ ମୋତେ ଶୁଭେ
ଅଥୟ ମୁଁ ହୁଏ
କାହା ଦେହ ପରଶରେ
ନିଦ ଭାଂଗିଯାଏ ।

୧୧୯

ମୁଁ ଜାଣେନି କାହିଁ ତୁମେ
ନିଜ ନିଜ ଲାଗ
ଭରିଦିଅ ମୋ ମନରେ
ନୀଳ ଅନୁରାଗ ।

୧୨୦

ତୁମେ କୁହ ମିଛ ଯାହା
ମୁଁ କହୁଛି ସତ
ମୁଁ ଯାହା କରୁଛି କେହି
ଦେଖୁନାହାନ୍ତି ତ !



Digitized by PPRACHIN, SOA

୧୨୧

ଶୁଣି ପାରୁଛି ମୁଁ ତୁମ
ହୃଦୟର ସ୍ୱର
ଜହ୍ନ ଜହ୍ନ ମନ ତୁମ
ପ୍ରୀତିର ସମ୍ଭାର ।

୧୨୨

କେମିତି ଆଣିଲ ତାକୁ
ମୋ ପାଖକୁ ଡ଼ାକି
ତୁମେ ମୋର ମନକଥା
ଜାଣିପାରିଲ କି !

୧୨୩

ଠେଲିଦିଅ ନାହିଁ ମୋତେ
ଦୂରକୁ ଦୂରକୁ
ସଂଦେହ କରନି ମୋର
ଭଲ ପାଇବାକୁ ।

୧୨୪

ଦିଇପଟ ପାଣିକାଚ
ଟୋପାଏ ସିଂଦୁର
ଏତିକିରେ ତୁମସହ
ବାଂଧିଲି ସଂସାର ।



Digitized by PPRACHIN, SOA

୧୨୫

ସୁଶୀତଳ ଶୀତରାତି
ଜହ୍ନରେ ଭିଜିଛି
ଫ୍ରକ୍ ପିନ୍ଧା ଝିଅଟିକୁ
ସ୍ୱପ୍ନ ଦେଖାଉଛି ।

୧୨୬

ନିଜେ ମୁଁ ମାପୁଛି ନିଜ
ତାତି ରାତିସାରା
ନିଜହାତେ ନିଜେ ମୁହିଁ
ଦେଉଅଛି ଧରା ।

୧୨୭

କାହାର ଏ ପାଦଶବ୍ଦ
କାହା କଣ୍ଠ ସ୍ୱର
ଚିହ୍ନା ଚିହ୍ନା ଲାଗେ ମୋତେ
ଯେମିତି ନିଜର ।

୧୨୮

ମନ୍ଦାର ଫୁଲ ଭଳି ସେ
ଟହ ଟହ ନାଲି
ଚୋରା ଚାହାଣୀକୁ ତା'ର
ହୁଏନାହିଁ ଭୁଲି ।



Digitized by PPRACHIN, SOA

## ୧୨୯

ଚାହିଁ ଚାହିଁ ଆଖିରୁ ମୋ
ପାଣି ଗଲା ମରି
କିଛି ତୁମେ କହିଲନି
କାହିଁ ସ୍ଥିର କରି ।

## ୧୩୦

ଆକାଶର ଅଗଣାରେ
ତାରା ଫୁଲ ଫୁଟେ
ତୁମ କଥା ଭାବି ଭାବି
ସାରା ରାତି କଟେ ।

## ୧୩୧

ମୁଣ୍ଡ ମୋ ଆଉଁଷି ଦେଇ
ପଚାରିଲ କିଏ
ଗଦା ଗଦା ପ୍ରଶ୍ନ ପାଇଁ
ଉତ୍ତର ଗୋଟିଏ ।

## ୧୩୨

ମୁରୁକି ହସିଲ ତୁମେ
ଦେଖି ଘୁଞ୍ଚିଗଲ
ମୁଁ ସେଠାରେ ଥିବାଯାଏ
ମୋତେ ଦେଖୁଥିଲ ।



Digitized by PPRACHIN, SOA

## ୧୩୩

ପରାଣ ଦେଲି ଉଜାଡ଼ି
ତୁମରି ପ୍ରେମରେ
ହୃଦୟେ ବସାଇ ଦେଲି
କେଡ଼େ ସରାଗରେ ।

## ୧୩୪

ରାଣଦେଇ କହିଥିଲି
କଥା ରଖିଲନି
ଆସିବ ଆସିବ କହି
ଆସି ପାରିଲନି ।

## ୧୩୫

ତୁମକୁ ମୁଁ ଭଲପାଏ
ପ୍ରାଣଠାରୁ ବଳି
ତୁମ ବିନା ଚାରିଆଡ଼
ଲାଗେ ଖାଲି ଖାଲି ।





Digitized by PPRACHIN, SOA

୧

ଭିତର ଓ ବାହାରର
ସୂକ୍ଷ୍ମ ବ୍ୟବଧାନ
ସନ୍ଦେହ ଘେରରେ ଦିଶେ
ମୃତ୍ୟୁର ସମାନ ।

୨

ଏକା ଏକା ଆସିଛି ମୁଁ
ଏକା ଯିବି ଚାଲି
ଯେତେ ଯିଏ ସାଂଗସାଥୀ
ସବୁ ଯିବେ ଭୁଲି ।

୩

ବଂଚିବାର ବର୍ଣ୍ଣବୋଧ
ପଢ଼ି ନଜାଣିଲେ
ଜୀବନକୁ ଜିଇଁ ହୁଏ
ନାହିଁ କେବେ ହେଲେ ।

୪

ଆଖି ପଲକରେ ଦିଶେ
ଅଂଧକାର ରାତି
ଚାରିଆଡ଼େ ଛାଇଯାଏ
ଦୁଃଖ ଅସରନ୍ତି ।



Digitized by PPRACHIN, SOA

୫

ସକାଳର ଶୁଭ୍ରତାରେ
ସତେ ସମୟ
ଜୀବନକୁ କରିଦିଏ
ସମ୍ଭାବନାମୟ ।

୬

ସକାଳରୁ ସଞ୍ଜ ଯାଏ
ପ୍ରତିଟି ଘଟଣା
ସମୟର ସାଗରରେ
କ୍ଷୁଦ୍ର ବାଲିକଣା ।

୭

ମଧ୍ୟାହ୍ନର ମାନଚିତ୍ର
ମାନସ ପଟରେ
ଆଙ୍କିଦିଏ ରୌଦ୍ରତାର
ଛବି ତା' ଭିତରେ ।

୮

ଜୀବନର ରେଳପଥେ
କାହିଁ କେତେ ଦୌଡ଼
ହାରିବାର ଷ୍ଟେସନ୍‌ରେ
ଭୁଲ୍ ବଡ଼ ବଡ଼ ।



Digitized by PPRACHIN, SOA

୯

ବେଗଗାମୀ ରେଳଯାଏ
ବହୁ ପଥ ମାଡ଼ି
ଦୁଃଖସୁଖ ସବୁ ନିଏ
ଆପଣାର କରି ।

୧୦

ମୁଣ୍ଡ କୋଡ଼ି ଚାଷୀ କାନ୍ଦେ
ହିଡ଼ ମୁଣ୍ଡେ ବସି
ମରୁଡ଼ି ତା' କାଳ ହେଲା
ଦୁଃଖ ରାଶି ରାଶି ।

୧୧

ବାର ମାସେ ତେର ପର୍ବ
ଯାନିଯାତ୍ରା କେତେ
ତିଥିବାର ନକ୍ଷତ୍ରରେ
ପାଳୁ ଯେତେ ଯେତେ ।

୧୨

ମେଘ ଯେବେ ବର୍ଷିଯାଏ
ଗାଆଁ ମାଟି ଦେହେ
ଓଦା ଓଦା ଆଖିପତା
ବୁଜି ହୋଇ ଯାଏ ।



Digitized by PPRACHIN, SOA

୧୩

ବହୁଦୂରେ ରହିଲା ସେ
ନିକାଞ୍ଚନ ଦ୍ୱୀପ
ତଥାପି ଡ଼ରାଏ ବୁଢ଼ୀ
ଅସୁରୁଣୀ ଗପ ।

୧୪

ନୀଳ ଦରିଆର କୂଳେ
ଘଞ୍ଚ ନୀଳବନ
ନାନା ଜାତି ପକ୍ଷୀ ସେଠି
ଜମାନ୍ତି ଆସ୍ଥାନ ।

୧୫

କଥାକୁ ମୋ କାନେଇକି
କିବା ସୁଖ ପାଅ
ପାଖକୁ ଆସିବ କ'ଣ
ଦୂରେ ଚାଲିଯାଅ ।

୧୬

କିଛି ସତ କିଛି ମିଛ
ମିଛ ମିଛ ସତ
କହିଦିଏ ସହିଯାଏ
ଅଭ୍ୟାସ ବଶତଃ ।



Digitized by PPRACHIN, SOA

୧୭

ସୂର୍ଯ୍ୟ ଚନ୍ଦ୍ର ଗ୍ରହତାରା
ଥିଲେ ବି ଦୂରରେ
ଜୀବନର ନିୟନ୍ତ୍ରଣ
ସେମାନଙ୍କ ଠାରେ ।

୧୮

ମନରେ ବଂଧା ଶରୀର
କର୍ମ କରିଯାଏ
ଜୀବନ କାଳଟି ତା'ର
ନିୟନ୍ତ୍ରିତ ହୁଏ ।

୧୯

ସ୍ୱପ୍ନମୟ ସ୍ୱର୍ଣ୍ଣମୟ
ଜୀବନର ପଥେ
ଘଟଣା ଓ ଦୁର୍ଘଟଣା
ଆସେ କେତେ କେତେ ।

୨୦

ଅନ୍ଧାରୀ ଜୀବନେ କେବେ
ହେବ ସୂର୍ଯ୍ୟୋଦୟ
ଅନ୍ତ ହେବ ଜୀବନରୁ
ଦୁଃଖ ସମୁଦାୟ ।



Digitized by PPRACHIN, SOA

## ୨୧

ସୁହାଇଲା ଭଳି କଥା
କେତେ ଯେ କହିବି
ଅଣ୍ଟିରେ ଛୁରୀକୁ ରଖି
ତଣ୍ଟି କାଟୁଥିବି ।

## ୨୨

ସ୍ମୃତି ହୋଇ ଦେଖାଦିଅ
ବୁନ୍ଦାଏ ଲୁହରେ
ଫୁଲ ହୋଇ ରହିଥାଅ
ମୋ ଶବାଧାରରେ ।

## ୨୩

ନିଃସହାୟ ମନେହୁଏ
ପରମାୟୁ ମୋର
ଅପେକ୍ଷା କରିଛି କେବେ
ଶେଷ ହେବ ତା'ର ।

## ୨୪

କୋମଳ ଶିଶୁଟି ପରି
ନିରୋଳା ଆକାଶେ
ଅନାଇଲି କେବେ ମୋର
ଖେଳ ହେବ ଶେଷ ।



Digitized by PPRACHIN, SOA

୨୫

ମୋ ଅନ୍ତିମ ଦିନ ଯେବେ
ହେବ ଉପସ୍ଥିତ
ଛାଡ଼ି ଚାଲି ଗଲି ବୋଲି
ଗାଳି ଦେବନି ତ !

୨୬

ଶବାଧାରେ ମୋ ରଖିବ
ତୋଡ଼ାଏ ଗୋଲାପ
ମୁଣ୍ଡଗୁଞ୍ଜି ମାପୁଥିବ
ଦେହର ଉତ୍ତାପ ।

୨୭

ଯେତେଯାହା ଘଟିଥିଲା
ଜୀବନ ଦଶାରେ
ସବୁଆଜି ମନେପଡ଼େ
ବ୍ୟସ୍ତ ସ୍ୱର୍ଗଦ୍ୱାରେ ।

୨୮

ବହୁ ଦିନୁ କହିଥିଲି
ତୁମ ଆଗୁ ଯିବି
ଆଗେ ମୋର ଚାଲିଗଲ
କେମିତି ବଂଚିବି ?



Digitized by PPRACHIN, SOA

୨୯

ଚାରିଆଡ଼ ଦେଖ ଆଜି
ଗହଳ ଚହଳ
କିଏ କିଏ ଆସିଛନ୍ତି
ଧରି ଫୁଲମାଳ ।

୩୦

ଏଇ ଟିକେ ପରେ ଯିବି
ମୁଁ ଯେ ଶ୍ମଶାନକୁ
ଛାଡ଼ି ଜ୍ଞାତି ପରିଜନ
ଆଜି ସମସ୍ତଙ୍କୁ ।

୩୧

ଶରୀର ମୋ ଲୀନ ହେବ
ପଞ୍ଚମହାଭୂତେ
ଛାଡ଼ିଯିବି ଯାହା ଅର୍ଜି
ଥିଲି ଏ ଜଗତେ ।

୩୨

ତୁମେ ଗଲ ମୁଁ ବି ଯିବି
ସବୁ ଯିବେ ଚାଲି
ହାତଧରି ଥିଲି ତୁମ
ଲାଗେ ମୋତେ କାଲି ।



Digitized by PPRACHIN, SOA

## ୩୩

କେଡ଼େ ଜତନରେ ଗଢ଼ି
ଥିଲେ ଏ ସଂସାର
ଅପେକ୍ଷା ନକରି ଚାଲି
ଗଲ ଆରପୁର ।

## ୩୪

ଜଳନ୍ତା ଯୁଇରେ ଦେଖେ
ତୁମେ ଜଳୁଥିଲ
ମୋ ଆଖି ଆଗରେ ତୁମେ
ପାଉଁଶ ହୋଇଲ ।

## ୩୫

ସେମାନେ ଗଲେଣି ଚାଲି
କାହିଁ କେତେ ଦିନୁ
ଏକାକୀ ରହିଛି ଏଠି
ଦିନ ଗଣୁ ଗଣୁ ।

## ୩୬

ଜାଣିଥିଲି ବୁଢ଼ାହୋଇ
ଲୋକ ମରିଯାଏ
ମୋ ମୃତ୍ୟୁର କାରଣ ମୁଁ
ଜାଣିନି ଏଯାଏଁ ।





Digitized by PPRACHIN, SOA

୩୭

ଦେଖୁ ଦେଖୁ ସରିଆସେ
ରାସ୍ତା ଜୀବନର
ମାଗିନିଅ ଯେତେ ଯାହା
ତୁମର ଦର୍କାର ।

୩୮

ପ୍ରତିଟି ନିଃଶ୍ୱାସ ପାଇଁ
ଚାଲିଛି ସଂଗ୍ରାମ
ପ୍ରତିଟି ବିଶ୍ୱାସେ ବଂଧା
ଏହି ଧରାଧାମ ।

୩୯

ଧାପେ ଜୀବନ ଲୋଡୁଛି
ଟୋପାଏ ସମୟ
ସବୁକିଛି ଲାଗେ ଏଠି
ବିସ୍ମୟ ବିସ୍ମୟ ।

୪୦

ମାରିଦେଲେ ମାରିଦିଅ
ଘୋଷାରନି ମୋତେ
ସବୁକିଛି କ୍ଷଣସ୍ଥାୟୀ
ପାର୍ଥିବ ଜଗତେ ।



Digitized by PPRACHIN, SOA

### ୪୧

ଜୀବନଟା ଦେଖ ଏକ
ରଫ୍ ଖାତା ଭଳି
ଯିଏ ଯାହା ପାରୁଛି ତା
ଗାରେଇ ଦେଲାଣି ।

### ୪୨

ନିନ୍ଦନାହିଁ କର୍ମଫଳ
ଭୋଗୁଛ ଯାହାକୁ
ମନବଳାଅ ନିଷ୍କାମ
କର୍ମ କରିବାକୁ ।

### ୪୩

ପ୍ରାପ୍ତି ଆଉ ଅପ୍ରାପ୍ତିର
ଶେଷ ପାହାଚରେ
ହଜିଯିବି ନିମିଷକେ
ନିର୍ଣ୍ଣୟ ନେବାରେ ।



Digitized by PPRACHIN, SOA

## ୪୪

ଜୀବନଟା ଲାଗେ ଏକ
ଫାଙ୍କା ଡ୍ରଇଁ ଖାତା
ଗପ ସବୁ ଯେଉଁଠାରେ
ଦୁର୍ବୋଧ୍ୟ କବିତା ।

## ୪୫

କିଏ ଶୁଣାଇବ ଆଉ
ଜୀବନର ଗୀତ
ଭିତରେ ଭିତରେ ମୁଁ ଯେ
ହେବି ଭୟଭୀତ ।

## ୪୬

ରଙ୍ଗରେ ଭିଜି ଯାଉଛି
ତୁମ ଆତ୍ମୀୟତା
ପୋଛିଦେଇ ମୋ ଭିତର
ତରଳ ଶୂନ୍ୟତା ।



Digitized by PPRACHIN, SOA

୧

ମାଟିର ମଥାନ ପରେ
ଉଡ଼େ ଭସାମେଘ
ବର୍ଷେ ନାହିଁ ବୁଲୁଥାଏ
ଏପାଖ ସେପାଖ ।

୨

ସମୟ ବଦଳୁଥାଏ
ଜିଇଁବା ରାସ୍ତାରେ
ଋତୁଚକ୍ର ଚାଲିଥାଏ
ଦେହର ସହରେ ।

୩

ସମୟର ଶୋଭାଯାତ୍ରା
ଋତୁରୁ ଋତୁକୁ
ବୟସର ବିବର୍ତ୍ତନ
ଆୟୁଷ ଦେହକୁ ।

୪

ବର୍ଷାଙ୍କରେ ଆଲୋଡ଼ିତ
ଖରାର ସହର
ସହିଥାଏ ନିର୍ଯ୍ୟାତନା
ନିର୍ଦ୍ଦୟ ମେଘର ।



Digitized by PPRACHIN, SOA

୫

ସଂଚିତ ସାମର୍ଥ୍ୟ ସବୁ
ଏକ ହୋଇଯିବ
ଭୀରୁତାର ଭଂଗାପୋଲ
ଭୁଷୁଡ଼ି ପଡ଼ିବ ।

୬

ନିଶ୍ଚିହ୍ନ ହୋଇବ ନଦୀ
ସାଗର ଦେହରେ
ଇଚ୍ଛାସବୁ ଲୁଚିଯିବେ
ଅନୁଶୋଚନାରେ ।

୭

ଆକାଶର ବିଶାଳତା
ମାପେ ମନପକ୍ଷୀ
ସାଗରର ଗଭୀରତା
ନଜରରେ ରଖି ।

୮

ସୂର୍ଯ୍ୟଭଳି ସତ୍ୟସିଏ
ଶକ୍ତ ଓ କଠୋର
ସ୍ଥିର ପୁଣି ଜଳ ଭଳି
ମଝି ସମୁଦ୍ରର ।



Digitized by PPRACHIN, SOA

୯

ସୀମାହୀନ ନୀଳିମାର
ବ୍ୟସ୍ତ ଉପକୂଳ
ରହିଛି ସେ କେଉଁକାଳୁ
ଥିବ କାଳ କାଳ ।

୧୦

ଆନ୍ଦୋଳିତ ଆଲୋକରେ
ଝଡ଼ର ପ୍ରଳୟ
ଶାପଗ୍ରସ୍ତ ସମାଜକୁ
କରେ ବିଷମୟ ।

୧୧

ଦୁଃଖଟିକୁ ବାଣ୍ଟିଦେଲେ
କମେ ଧୀରେ ଧୀରେ
ସୁଖ ବାଣ୍ଟିବାରେ କ୍ରମେ
ତାହା ବଢ଼ିଥିଲେ ।

୧୨

ମୁହାଣଟି ମିଳନର
ଅଟେ ଜନ୍ମସ୍ଥାନ
ନଦୀ ସାଗରର ଦେହେ
ହୁଅଇ ନିଶ୍ଚିହ୍ନ ।



Digitized by PPRACHIN, SOA

## ୧୩

ଧୀରକଥା ଧୀରେ ଚାଲି
ସବୁ ଧୀର ଧୀର
ଧୀରପାଣି ପଥରକୁ
କାଟେ ବରାବର ।

## ୧୪

ଜୀବନ ଆସୁଛି ସରି
ବ୍ୟଥା ସରୁ ନାହିଁ
ଗଛ ଆସି ବୁଢ଼ା ହେଲା
ଫୁଲ ଫୁଟୁନାହିଁ ।

## ୧୫

ଦିନ ଦିନ ଅପେକ୍ଷାରେ
ମନ ମରିଯାଏ
ଦିନ ସରିଯାଏ ସିନା
ଚିହ୍ନ ରହିଯାଏ ।

## ୧୬

ଅଜର ଅମର ଆତ୍ମା
ରହେ ଅମଳିନ
ଶରୀର ତ ନଷ୍ଟଯାଏ
କ୍ଷଣିକ ଜୀବନ ।



Digitized by PPRACHIN, SOA

୧୭

କାମନାର କାମଧେନୁ
ଜମିଦାରୀ ଠାଣି
ସୁଖପରେ ଦୁଃଖ ଦିଏ
ସତେ ଜାଣି ଜାଣି

୧୮

ଜହରର ଜୁଆରଟା
କେଡ଼େ ଭୟଙ୍କର
ଦେହମନ ଭେଦେ ତାକୁ
ଦୂରରୁ ଜୁହାର ।

୧୯

ଚାରିକଡ଼ ସ୍ୱର୍ଗଦିଶେ
ସ୍ୱଚ୍ଛ ଓ ନିର୍ମଳ
ପରିତ୍ୟକ୍ତ ପୃଥିବୀରେ
ଦୁଃଖ ମାଳ ମାଳ ।

୨୦

ଅତିକ୍ରାନ୍ତ ସମୟର
କେଡ଼େ ଟାଣପଣ
ଅଧୀର ଏ ଆତୁରତା
କରେ ପ୍ରଦକ୍ଷିଣ ।



Digitized by PPRACHIN, SOA

## ୨୧

ଶୀତରେ ଶୋଇଛି ମୋର
ସୁଶୀତଳ ସୁଖ
ଦୁଃଖରେ ଡ଼ାକିଛି ଖାଲି
ନାରାୟଣ ରଖ ।

## ୨୨

ଋତୁମାନେ ଆସୁଥା'ନ୍ତି
ଏକ ପରେ ଏକ
ମୋହିନୀ ମାଟିରେ ରଚି
ତାଣ୍ଡବ ଅନେକ ।

## ୨୩

ଅନ୍ଧାର ରହସ୍ୟ ଭେଦି
ରାତି ଆସେ ପାହି
ସକାଳ ସୂର୍ଯ୍ୟକୁ ଚାହେଁ
ସବୁ ଭୁଲିଯାଇ ।

## ୨୪

ଆନ୍ଦୋଳିତ ଆକାଶରେ
ଝଡ଼ର ପ୍ରଳୟ
ମୁଠା ମୁଠା ଆଲୋକକୁ
କରେ ବିଷମୟ ।



Digitized by PPRACHIN, SOA

୨୫

ମେଘଙ୍କର ଆତଯାତ
ଆକାଶର ଦେହେ
ଝୁଲୁଛନ୍ତି କେଉଁକାଳୁ
ଶୂନ୍ୟରେ ଏଯାଏଁ ।

୨୬

ସମସ୍ତେ ମରିବେ ଦିନେ
ମୁଁ ବି ମରିଯିବି
ମରିବା ତ ଧ୍ରୁବସତ୍ୟ
ପ୍ରମାଣ କରିବି ।

୨୭

ହତ୍ୟା ଅପବାଦ ଭୟ
କରଇ ବ୍ୟଥିତ
ଲୁଚି ଲୁଚି ବୁଲିଲେ ବି
ସତ ଖାଲି ସତ

୨୮

ସୂର୍ଯ୍ୟ କାହିଁ କହିବ ଯେ
କେଉଁଠି ଉଇଁବ
ସକାଳ ଖରାକୁ ଦେଖି
ରାତି ପାହିଯିବ ।



Digitized by PPRACHIN, SOA

## ୨୯

ବର୍ଷ ପରେ ବର୍ଷ ବିତେ
ଋତୁ ବି ବଦଳେ
ନିଜ ନିଜ କହି ପର
ହୋଇଗଲା ପରେ ।

## ୩୦

ନିଆଁରେ ଜଳିବ ଦେହ
ଶୂନ୍ୟେ ଯିବ ମିଶି
ଛାଡ଼ିବ ଆତ୍ମା ଶରୀର
ଯିବ ହସି ହସି ।

## ୩୧

ମୋ ଦୁଃଖରେ ମୁଁ ଅଛି
(କାହାର) କିବା ଯାଏ ଆସେ
ମାଟିରୁ ଆସିଛି ଦେହ
ମାଟିଦେହେ ମିଶେ ।

## ୩୨

ସବୁଦିନ ସବୁ ରାତି
ସେହି ଏକା ପରି
ସବୁ ସ୍ୱପ୍ନ ସବୁ ମନ
ହୁଏନି ପାଶୋରି ।



Digitized by PPRACHIN, SOA

### ୩୩

ପବନ ଉଡ଼େଇ ନିଏ
ନିମିଷକେ ମେଘ
ଧୀରେ ଧୀରେ ବଦଳାଇ
ଦିଏ ପାଣିପାଗ ।

### ୩୪

ରାତିହେଲେ ଆକାଶଟା
ପରିପୂର୍ଣ୍ଣ ହୁଏ
ମାଟିରୁ ଗଢ଼ା ଦେହଟା
ମାଟିରେ ହିଁ ମିଶେ ।

### ୩୫

ଖରା ଅଛି ବର୍ଷା ଅଛି
ଶୀତ ଓ କାକର
ପରିଚିତ ପୃଥିବୀରେ
ସବୁ ଆପଣାର ।

### ୩୬

ଜନ୍ମପରେ ମୃତ୍ୟୁ ଆସେ
ଦିନ ପରେ ରାତି
ହସକାନ୍ଦ ଦୁଃଖସୁଖ
ଦୁନିଆର ରୀତି ।



Digitized by PPRACHIN, SOA

## ୩୭

ଦିନର ଆଲୋକ ଆଉ
ରାତିର ଅନ୍ଧାର
ସୁଖଦୁଃଖ ହସକାନ୍ଦ
ଭରା ଏ ସଂସାର ।

## ୩୮

ଫଳଭାରେ ଯେମିତିକା
ଗଛ ନଇଁଯାଏ
ଜଳ ଭାରେ ମେଘଖଣ୍ଡ
ମଥାକୁ ନୁଆଁଏ ।

## ୩୯

ଅସରାଏ ବର୍ଷିଯାଏ
ମେଘଯାଏ ଉଡ଼ି
କିଏସେ ନଥାନ୍ତି ପାଶେ
ଧରିବାକୁ ଭିଡ଼ି ।

## ୪୦

ଭେକ ଥିଲେ ଭିକ ମିଳେ
ମିଳେ ସବୁକିଛି
ଛାତିତଳେ ଛୁରା ଗେଂଜି
କାହିଁସେ ବୁଲୁଛି ।



Digitized by PPRACHIN, SOA

## ୪୧

ସମୟ ଓହ୍ଲାଇ ଗଲା
ପାଖ ଷ୍ଟେସନରେ
ବିଦାୟ ନେଇକି ମୋଠୁ
ଚାଲିଲା ଆଗରେ ।

## ୪୨

ଅସ୍ଥିର ଦେବୀଙ୍କ ମଥା
ଆପେ ନଇଁଯାଏ
ଅସୁସ୍ଥ ବ୍ୟକ୍ତିର କଥା
ମନେ ରହିଯାଏ ।

## ୪୩

ପାହାଡ଼ର ପାଦଦେଶୁ
ଝରଣା ବହୁଛି
କେତେକେତେ ଖାଲଢ଼ିପ
ଡ଼େଇଁ ଆସୁଅଛି ।



Digitized by PPRACHIN, SOA

୪୪

ସଫଳ ସବୁଜ ଲତା
ମାଡ଼ି ମାଡ଼ି ଯାଏ
ଦିନରାତି ଚାରିଆଡ଼
ରଂଙ୍ଗ ଖୋଜୁଥାଏ ।

୪୫

ବୃକ୍ଷଦେହୁ ଡ଼ାହି ଖସେ
ଡାଳରୁ ପତର
ଜୀବନଟା ଯିବା ପାଇଁ
କେତେ ଯେ ମାତର ।

୪୬

ମନକୁ ମୋ କାବୁକରେ
ବାର୍ଦ୍ଧକ୍ୟର ସ୍ୱର
ଦିନକୁ ମୋ ବଂଦୀ କରେ
ଅଦୃଶ୍ୟ ଅନ୍ଧାର ।



Digitized by PPRACHIN, SOA

## ୪୭

ପାପ ଅଛି ପୁଣ୍ୟ ଅଛି
ଅଛନ୍ତି ଈଶ୍ୱର
ପାପଭାର ବଢ଼ିଗଲେ
ନୂଆ ଅବତାର ।

## ୪୮

ମାଆକୋଳେ ଶୋଇ ଦେଖୁ
ଥିଲି ଯେତେ ସ୍ୱପ୍ନ
ସବୁ ସ୍ୱପ୍ନ ସତ୍ୟ ହେଲା
ହୋଇଲି ମୁଁ ଧନ୍ୟ ।

## ୪୯

କରମରେ ଲେଖାଅଛି
ଭୋଗିବାକୁ ଯାହା
କିଏ ତା କରିବ ଆନ
ଭଗବାନ ସାହା ।



Digitized by PPRACHIN, SOA

୫୦

ପାପ ଏକ ଚରାଭୂଇଁ
ମିଛ ହୃଦୟର
ପୁଣ୍ୟର ପଣତ ଦେହେ
ସତ୍ୟର ସହର ।

୫୧

ସବୁବେଳେ ସତ୍ୟର ସେ
କଣ୍ଟକିତ ପଥ
ଅତିକ୍ରମ କରିବାକୁ
ହୁଏ ମୁଁ ବ୍ୟଥିତ ।

୫୨

ଦୃଶ୍ୟମାନ ମୂର୍ତ୍ତି ତୁମେ
ଅଦୃଶ୍ୟ ନିର୍ଜୀବ
ଜଡ଼ ଚେତନର ତୁମେ
ବ୍ରହ୍ମ ଅନୁଭବ ।



Digitized by PPRACHIN, SOA

୧

ପ୍ରସାରିତ ପ୍ରତୀକ୍ଷାର
ବୃଥା ଦୀର୍ଘଶ୍ୱାସ
ଆଶଙ୍କା ଓ ଅନ୍ତର୍ଦାହ
କେବେ ହେବ ଶେଷ ।

୨

ଅନିଶ୍ଚିତ ଅବସ୍ଥାର
କେବେ ହେବ ଶେଷ
ପ୍ରୟୋଜନ ପଡ଼ିବନି
ଥଟ୍ଟା ଉପହାସ ।

୩

ଅବୁଝା ଆକାଶ ଦେହେ
ଶେଷ ଅଗ୍ନିଶିଖା
ନିମିଷକେ ରଚିଯାଏ
ମୃତ୍ୟୁ ବିଭୀଷିକା ।

୪

ଖୋଜି ଖୋଜି ଥକିଲିଣି
ରାଇଜ ଗୋଟାକ
ପାଇବିକି ପାଇବିନି
ସନ୍ଦେହ ଜନକ ।



Digitized by PPRACHIN, SOA

୫

ଶୋଇ ପଡ଼ିଥିବା ମେଘ
ଉଠିଲେ ଅନାଏ
କେଉଁଠି ସେ ବର୍ଷିଯିବ
ଭାବି ହେଉଥାଏ ।

୬

ସ୍ୱପ୍ନ ଆସେ ସ୍ୱପ୍ନ ଯାଏ
ରାତି ରହିଥାଏ
ଠିକ୍ ଠିକ୍ କହୁ କହୁ
ଭୁଲ୍ ହୋଇଯାଏ ।

୭

କିଛି ସ୍ୱପ୍ନ କାନ୍ଦୁଥାନ୍ତି
ସତ ହେବା ପାଇଁ
କିଛି ଆଖି ଝୁରୁଥାନ୍ତି
ଲୁହ ପୋଛିଦେଇ ।

୮

ତୁମେ କୁହ କେଉଁଠାରେ
ତୁମକୁ ପାଇବି
ଠିକ୍ କରି ନକହିଲେ
ଖୋଜି ହେଉଥିବି ।



Digitized by PPRACHIN, SOA

## ୯

ଏତେ ମିଛ କହି ତୁମେ
କି ଲାଭ ପାଇବ
ନିଜ ଜାଲେ ଛନ୍ଦିହୋଇ
ଧରାପଡ଼ିଯିବ ।

## ୧୦

ସନ୍ଦେହରେ ଭରପୁର
ଏ ଖୋଲା ଜୀବନ
ସାଇତା ସନ୍ତକଟିଏ
ଥିବାଯାଏ ପ୍ରାଣ ।

## ୧୧

ସ୍ମୃତିକୁ ସନ୍ତକ କରି
ସ୍ୱପ୍ନ ମୁଁ ଦେଖୁଛି
ଅନ୍ଧାରରେ ଦିନରାତି
ବାଡ଼ି ବୁଲାଇଛି ।

## ୧୨

ଗହ ଗହ ନିରବତା
ଶୂନ୍ୟ ଦରବାର
ଗହନ ନିଦରେ ରଚେ
ସ୍ୱପ୍ନ ବାରଂବାର ।



Digitized by PPRACHIN, SOA

୧୩

କେଉଁ ରାସ୍ତା ଧୂଳି ତୁମେ
ଦୃଷ୍ଟି ପଟଚିତ୍ର
କେଉଁ ବୟସ୍କ ଡ଼ାଳର
ଅଧାଝଡ଼ା ପତ୍ର ।

୧୪

ଗଲି ଗଲି କହି କହି
ଦିନେ ଚାଲିଗଲି
ଅଧା ଅଧା ସ୍ୱପ୍ନ ସବୁ
ପୁରା କରିଦେଲି ।

୧୫

କେଉଁ କିମ୍ବଦନ୍ତୀ ପୁଜ୍ୟ
ପୁରୁଷ ହୋଇଲ
ପରପାଇଁ ଜୀବନକୁ
ତୁଚ୍ଛ କରିଥିଲ ।



Digitized by PPRACHIN, SOA

୧

ତମ ଆଖି ଉପକୂଳେ
ଆଶାର ତରଂଗ
ତମ ନିଶ୍ୱାସରେ ଖାଲି
ଶ୍ରଦ୍ଧାର ସ୍ଫୁଲିଙ୍ଗ ।

୨

ଆଲୋକର ଅଭିମାନ
ସୂକ୍ଷ୍ମ ଅନୁଭବ
ଅନ୍ଧକାର କଣ୍ଠସ୍ୱର
ଅତି ଅବାସ୍ତବ ।

୩

ମନ୍ତ୍ର ଉଚ୍ଚାରିତ ଶବ୍ଦ
ଭାସିଯିବା ପରେ
ହଜିଯାନ୍ତି ପ୍ରାର୍ଥନାର
ଶେଷ ମୂର୍ଚ୍ଛନାରେ ।

୪

ଅସରନ୍ତି ଆଶା ମୋର
ଶେଷ ହୁଏ ନାହିଁ
ଅପେକ୍ଷାରେ ହନ୍ତସନ୍ତ
ହୁଏ କାହାପାଇଁ ।



Digitized by PPRACHIN, SOA

୫

ଯଦି କେବେ ଅକସ୍ମାତ୍
ବର୍ଷା ଦେଖାଦିଏ
ଛାତିର ଦର୍ଜା ଗୋଟାକ
ଆପେ ଫିଟିଯାଏ ।

୬

ଆଖିର ଦୁଃସ୍ୱପ୍ନ ସବୁ
ଏକାକାର ହୋଇ
ଚାହୁଁ ଚାହୁଁ ଉଡ଼ିଯାନ୍ତି
ସ୍ମୃତିକୁ ଆଢ଼େଇ ।

୭

ଆଖିର ପଲକେ ରାତି
ହୋଇଲେ ବିଲୟ
କଅଁଳ ସକାଳ ଖୋଜେ
ତୁମ ପରିଚୟ ।

୮

ଶେଷ ମେଘ ଭାସୁଥିବ
ଝଡ଼ ଯିବ ସରି
ପାଗଳ ପବନ ଆସି
ନେବ ତାକୁ ଭିଡ଼ି ।



Digitized by PPRACHIN, SOA

୯

ସବୁ ରାସ୍ତା ସରିଯାଏ
ମନ ମରିଯାଏ
ସବୁ ସକାଳରେ ମୁହଁ
ସଫା ଦେଖାଯାଏ ।

୧୦

ସୀମାହୀନ ଶୂନ୍ୟତାରେ
କ୍ଷୀଣ ଦୀର୍ଘଶ୍ୱାସ
ହଜିଯାଏ ନିମିଷକେ
ନହୁଏ ବିଶ୍ୱାସ ।

୧୧

ପବନ ଜାଣିକି ସବୁ
ରହିଛି ନିରବ
ଶବ୍ଦ ସବୁ ବର୍ଷିଗଲେ
ଝଡ଼ ସୃଷ୍ଟି ହେବ ।

୧୨

ସକାଳର କୋଳାହଳ
ପାଖକୁ ନଆସୁ
ନିର୍ଜନତା ଉପକୂଳେ
ସ୍ଥିର୍ ହୋଇ ବସୁ ।



Digitized by PPRACHIN, SOA

## ୧୩

ସାମାନ୍ୟ ସନ୍ଦେହ କରେ
ବ୍ୟସ୍ତ ଓ ବିବ୍ରତ
କୋଳ ବି ହୁଏ କୋକେଇ
ଆଶା ଅସ୍ତମିତ ।

## ୧୪

ଅତୀତରେ ଅନୁଭବ
ଭାରି ମନେପଡ଼େ
ଅନିଶ୍ଚିତ ଭବିଷ୍ୟତ
ଦୃଷ୍ଟିର ଉହାଡ଼େ ।

## ୧୫

ମନ୍ତ୍ର ତନ୍ତ୍ର ସବୁ ମିଛ
ମିଛ ପ୍ରହସନ
ନିରର୍ଥକ ଜୀବନରେ
ସବୁ ମୂଲ୍ୟହୀନ ।

## ୧୬

ଚନ୍ଦନ ବନର ଫୁଲ
ମହମହ ବାସେ
କୋଇଲିର କୁହୁ ଶୁଭେ
ଅବୁଝା ଆକାଶେ ।



Digitized by PPRACHIN, SOA

୧୭

ଝୁରି ଝୁରି ଝରିଯାଅ
ଫୁଟିବା ଆଗରୁ
ଦୂର ଦୂର ଲାଗ ଖାଲି
ଦେଖିଲେ ପାଖରୁ ।

୧୮

ତୁଳସୀ ତୁଳସୀ ବାସେ
ସାରା ଚଉତରା
ରାମନାମେ କମ୍ପୁଥାଏ
ଭିତର ଗମ୍ଭୀରା ।

୧୯

ନିରବତା ନିକଟରେ
ତୁମେ ହାରିଯାଅ
ଅଭିଶାପ ଦେବ କ'ଣ
ଆଶୀର୍ବାଦ ଦିଅ ।

୨୦

କେଉଁ ଶୁଭ ମୁହୂର୍ତ୍ତରେ
ଉତ୍ତୀର୍ଣ୍ଣ ଆବେଗ
ଅସରନ୍ତି ଅନୁଭବ
ସୁବର୍ଣ୍ଣ ସୁଯୋଗ ।



Digitized by PPRACHIN, SOA

୨୧

ମନେ ମନେ ମାନସିକ
ମନାସି ବସିଲେ
ମନହୁଏ ମନ୍ତ୍ରମୁଗ୍ଧ
କାହା ଇସାରାରେ ।

୨୨

ବର୍ଷ ବର୍ଷ ବିବାଦର
ହୁଏ ଯେବେ ଅନ୍ତ
ହୃଦୟଟା ହୋଇଉଠେ
ନିଜେ ପ୍ରାଣବନ୍ତ ।

୨୩

ରାତିସାରା ରଖିଯାଏ
ପ୍ରଶ୍ନ ପରେ ପ୍ରଶ୍ନ
ହାତକୁ ଦି'ହାତ ହେଲି
ମାନେ ନାହିଁ ମନ ।

୨୪

ଶୁଣିଥିବା ଶ୍ଳୋକ ରହେ
ଗୋଟେ ଦିନ ପାଇଁ
ପଢ଼ିଥିବା ଗପ କହେ
ଭୁଲିଯାଅ ନାହିଁ ।



Digitized by PPRACHIN, SOA

୨୫

ସ୍ମୃତିର ସଂକେତ ସବୁ
ନିଷ୍ପ୍ରଭ ମଳିନ
ଅତୀତର ଇତିହାସ
ହୁଏ ମ୍ରିୟମାଣ ।

୨୬

ଆକାଶ ଆଙ୍କି ଦେଇଛି
ଦରିଆର ରୂପ
ଚିତ୍ରିତ ସହରେ ଅବା
ସ୍ମୃତିର ପ୍ରଲେପ ।

୨୭

ପଥପ୍ରାନ୍ତ ପଥିକ ମୁଁ
ଦୁନିଆରେ ଏକା
ସ୍ୱର୍ଗ ମୋତେ ସ୍ୱଚ୍ଛ ଦିଶେ
ସୁବର୍ଣ୍ଣ ପରିକା ।

୨୮

ତୁମେ ଯାଅ ବାଟକାଟି
ଯାଅ ବହୁଦୂର
ପାହେନି ମୋହର ରାତି
ଅକ୍ଷତ ଅନ୍ଧାର ।



Digitized by PPRACHIN, SOA

## ୨୯

ବିଷାଦ ବିଳାପ ଧ୍ୱନି
ଯେବେ ଶୁଣାଯାଏ
ଭୟରେ ନିଜକୁ ନିଜେ
ଭୁଲି ହୋଇଯାଏ ।

## ୩୦

ସାରାବସ୍ତି ଜନଶୂନ୍ୟ
ଲାଗୁଛି ଏକାକୀ
ସବୁଆଡ଼େ ସଂପର୍କର
ବିଦ୍ରୋହ କାହିଁକି ।

## ୩୧

ଦୁର୍ଭାଗ୍ୟର ଦୈବବାଣୀ
ଭୋଗିବାକୁ ହୁଏ
ଭାଗ୍ୟ ମୋତେ ବଳେ ସେଠି
ପହଂଚାଇ ଦିଏ ।

## ୩୨

ଢ଼ୁଲୁକି ଉଠିଲା ଦ୍ୱାର
କବାଟ ଖୋଲିଲା
ପ୍ରାଣସ୍ପର୍ଶୀ ହୃଦୟକୁ
ବାଟ ଫିଟିଗଲା ।



Digitized by PPRACHIN, SOA

## ୩୩

ବାହାର ବାରଣ୍ଡା ସାରା
ଗହଳ ଚହଳ
ଘର ଭିତରଟା ଶୂନ୍ୟ
ସଞ୍ଜ ଓ ସକାଳ ।

## ୩୪

ଦୁଃଖ ଆସେ ଭଙ୍ଗା ଏକ
କୋଠାଘର ଭଳି
ଭୂକମ୍ପରେ ନଷ୍ଟ ହୁଏ
ରହିବି କିପରି ?

## ୩୫

ଅସତ୍ୟ ଅତୀତ କାଳ
ବର୍ତ୍ତମାନ ସତ୍ୟ
ଇଚ୍ଛା ହୁଏ ଲେଖିବାକୁ
ଜୀବନ ବୃତ୍ତାନ୍ତ ।

## ୩୬

ଜୀବନ ତରଳିଯାଏ
ଦିଅଁ ଦର୍ଶନରେ
ଅତୀତ ମଉଳିଯାଏ
ଗାଢ଼ ଅନ୍ଧାରରେ ।



Digitized by PPRACHIN, SOA

୩୭

ନୀରବିତ ନିର୍ଦ୍ଦୟତା
ନିଃସ୍ୱ ଅନୁଭବ
ଅଝଟ ପଣିଆ କାନ୍ଦ
ସେ କାହୁଁ ବୁଝିବ ।

୩୮

ସ୍ମୃତିକୁ ନିରସ୍ତ କଲି
ନିର୍ଯ୍ୟାତିତ ଦେହ
ଭାବିବା ଭୁଲିବା ଦେଖି
ହସୁଛି ସମୟ ।

୩୯

ରାତିର ପାଚେରୀ ଡ଼େଇଁ
ଦେଖିଲା ବେଳକୁ
ଜହ୍ନ ଖସିଯାଏ
ପାହାଡ଼ ତଳକୁ ।

୪୦

ପବନର ପାଲିଙ୍କିରେ
ବର୍ଷାରାଣୀ ବସେ
ବେଳକାଳ ଦେଖି ପୁଣି
ଖୁସିରେ ବରଷେ ।



Digitized by PPRACHIN, SOA

## ୪୧

ଝୁରାଫୁଲ ଗୁନ୍ଥିବାରେ
ଆହା କି ଆନନ୍ଦ
ଝରିଯିବା ବରଷାରେ
ମେଘ କାନ୍ଦ କାନ୍ଦ ।

## ୪୨

ଦୁନିଆଯାକର ଚିନ୍ତା
କାହିଁ ମୁଣ୍ଡେଇଲି
ନିଜହାତେ ନିଜକୁ ମୁଁ
ଜାଳିପୋଡ଼ି ଦେଲି ।

## ୪୩

ଲୁହ ହୋଇ ଝରିଯାଏ
ଶ୍ରାବଣର ବାରି
କୋହ ହୋଇ ଛାତିତଳ
ପକାଏ ବିଦାରି ।

## ୪୪

ବରଷା ଆଣିଛି ଦେହେ
ଅମାନିଆ ତାତି
ହସରେ ଭରି ରହିଛି
ଫୁଲ ଜାତି ଜାତି ।



Digitized by PPRACHIN, SOA

୪୫

ଦେହକୁ ଦେଲେ ଆଉଁଷି
ଶୀତ ଶୀତ ଲାଗେ
ସକାଳୁଆ ଖରାପଡ଼ି
ଗାଢ଼ ନିଦ ଭାଂଗେ ।

୪୬

କେତେ ଅନ୍ଧାରର ରାତି
ନିଶ୍ଚିହ୍ନ ହୋଇଛି
କେତେ ଶୂନ୍ୟର ସଡ଼କ
ପୂର୍ଣ୍ଣ ଦିଶୁଅଛି ।

୪୭

ବର୍ଷ ବର୍ଷ ବିତିଗଲା
ମିଛରେ ମିଛରେ
ଶତ୍ରୁ କିଏ ମିତ୍ର କିଏ
ଖାଲି ଚିହ୍ନିବାରେ ।

୪୮

ଦର୍ପଣ ଆଗରେ ଠିଆ
ହୋଇ ମୁଁ ଦେଖୁଛି
ନିଜେ କେଡ଼େ ନିଃସହାୟ
ଦେଖାଯାଉଅଛି ।



Digitized by PPRACHIN, SOA

## ୪୯

ଛାଇମୋର ଚାଲୁଥିଲା
ପଛେ ପଛେ ଖାଲି
କଅଣ କରୁଛି ମୁହିଁ
ଦେଖିନେବ ବୋଲି ।

## ୫୦

ଯେଉଁଠି ଚାହୁଁଛି ସେଠି
ତତ୍‌କ୍ଷଣାତ୍ ଯାଅ
ନିମିଷକେ ଭାଗ୍ୟ ତୁମ
ବଦଳାଇ ଦିଅ ।

## ୫୧

ମୋ ଆଗରେ ଘଟୁଥିବା
ପ୍ରତିଟି ଘଟଣା
ସ୍ମୃତି ହୋଇ ରହିଯାଏ
ମୋ ଜୀବନ ସାରା ।

## ୫୨

ଚିନ୍ତା ଆଉ ଭାବନାରେ
ଗଢ଼ା ଏହି ମନ
କ୍ରିୟା ପ୍ରତିକ୍ରିୟା କର୍ମ
ତିନୋଟି ଆୟାମ ।



Digitized by PPRACHIN, SOA

## ୫୩

କିଛି କିଛି ବେଳେବେଳେ
ହୁଏ ସବୁକିଛି
ସବୁକିଛି ଥାଇ ବି ତ
ହୁଏ ନାହିଁ କିଛି ।

## ୫୪

ତମେ ଏକ ଭଂଗାଘର
ଅଭାବୀ ମନର
ତମେ ଏକ ନୀଳରଂଗ
ଦୂର ଆକାଶର ।

## ୫୫

ରାତିହେଲେ କାହିଁ ହୁଏ
ଅଶାନ୍ତି ଆକ୍ରାନ୍ତ
ଛୋଟ ଛୋଟ କଥାରେ ବି
କ୍ରୋଧ ଜର୍ଜରୀତ ।

## ୫୬

ସୁନା ସୋରିଷିଆ ଖରା
ସୁନେଲି ଧରାରେ
ଖୋଜୁଥାଏ ନିତିଦିନ
ପ୍ରାତଃ ଭ୍ରମଣରେ ।



Digitized by PPRACHIN, SOA

## ୫୭

ଅବସନ୍ନ ଅପରାହ୍ଣ
ଅମାନିଆ ସଂଜ
ଆତୁର ଆଖିରେ ମୋତେ
କରେ ଦହଗଂଜ ।

## ୫୮

ହଳଦୀ ରଂଗର ଧରା
ନେଳିଆ ଆକାଶ
ତା ଭିରେ ବିତିଗଲା
କାହିଁ କେତେବର୍ଷ ।

## ୫୯

ଆଜିକାହିଁ ଚାରିଆଡ଼େ
ଭିନ୍ନ ଏକ ବାସ୍ନା
ଆଜିବୋଧେ ଗୋପଦାଣ୍ଡେ
ଖେଳୁଅଛି କାହ୍ନା ।

## ୬୦

ଅବିକଳ ଆକୃତିଟି
ଆଙ୍କି ହୋଇଯାଏ
ଦେଖି ନପାରିଲେ କିନ୍ତୁ
ଝାପ୍‌ସା ଦେଖାଯାଏ ।



Digitized by PPRACHIN, SOA

## ୬୧

ସବୁ ଉପହାର ଯେବେ
ଉପେକ୍ଷିତ ହୁଏ
ଦାୟିତ୍ୱବୋଧରେ ମୋର
କଳଙ୍କ ଲଗାଏ ।

## ୬୨

ଆଗରେ ମୋ ଅସରନ୍ତି
ଅନ୍ଧାର ସଡ଼କ
କେମିତି ମୁଁ ପାରହେବି
ସେଇ ସବୁତକ ।

## ୬୩

କିପରି କହିବି ତାଙ୍କୁ
ଅଧାଦେଖା ସ୍ୱପ୍ନ
ଅସମ୍ପୂର୍ଣ୍ଣ ଯେଉଁଥିରେ
ହୋଇନାହିଁ ମଗ୍ନ ।

## ୬୪

ଶୂନ୍ୟରୁ ଓହ୍ଲେଇ ଆସେ
ଅବ୍ୟକ୍ତ ଅନ୍ଧାର
ଟିକେ ପରେ କରିଦେବ
ସବୁ ନାରଖାର ।



Digitized by PPRACHIN, SOA

୬୫

ଚରିତ୍ରର ଚିତ୍ରପଟ୍ଟ
ଦୃଷ୍ଟି ଆଢୁଆଳେ
ଆଙ୍କିଦେଲା କିଏ ଆସି
କେଉଁ ମନ୍ତ୍ରବଳେ ।

୬୬

କେତେକାଳ ପବନସେ
ବହେ ଧୀରେ ଧୀରେ
ଉହ୍ଲୁକି ପଡ଼ିଛି ସତେ
ମେଘର ଉପରେ ।

୬୭

ଦିଅଁ ଦିଅଁ ମୁହଁ ତୁମ
ଦିଶେ ବାରଂବାର
ଧୂଆଁ ଧୂଆଁ ଆକାଶରେ
ସାକ୍ଷାତ୍ ଈଶ୍ୱର ।

୬୮

ଭଲପାଏ ପବନକୁ
ପାଣି ଓ ଆକାଶ
ଆଲୋକରେ ଆତଯାତ
ମାଟିର ମଣିଷ ।



Digitized by PPRACHIN, SOA

## ୬୯

ଓଠରେ ତ ମିଠା କଥା
ବିଷକୁମ୍ଭ ପରି
ହଳାହଳ ବିଷ ଦେଇ
ପକାଉଛ ମାରି ।

## ୭୦

ଆନ୍ଦୋଳିତ କରେ ମନ
ହୁଏ ମୁଁ ଅସ୍ଥିର
ଶିହରଣ ଆଣେ ଦେହେ
କାହିଁ ବାରମ୍ବାର ।

## ୭୧

ମୋ ଛାଇ ଚାଲିଛି ମୋର
ଆଗେ ଆଗେ ଦେଖ
ଅନ୍ଧାରରେ ବୁଲୁଛି ମୁଁ
ଆଲୁଅର ପାଖ ।

## ୭୨

ମୋର ତ ପତଳା ଏକ
ପବନର ଦେହ
ଯୁଆଡ଼େ ପାରୁଛ ତାକୁ
ଉଡ଼ାଇଣ ଦିଅ ।



Digitized by PPRACHIN, SOA

## ୭୩

କବିତାର ଧାଡ଼ିସବୁ
ଅସ୍ପଷ୍ଟ ଦିଶୁଛି
ରଂଗମରା କାଗଜରେ
ଲେଖି କେ ଦେଇଛି ।

## ୭୪

କବିତାକୁ ଚିହ୍ନି ହୁଏ
ଶବ୍ଦ ମାନଙ୍କରୁ
ମୁକୁଳିବା କଷ୍ଟକର
ଶବ୍ଦଙ୍କ ଜାଲରୁ ।

## ୭୫

କୁଳୁକୁଞ୍ଚା ପାଣିରେ ମୁଁ
ଇନ୍ଦ୍ରଧନୁ ଦେଖେ
ଆକାଶ ମନଟା ମୋର
ଥାଏ ପାଖେ ପାଖେ ।

## ୭୬

ସାରା ଦିନ ବିତିଯାଏ
ରିହରସାଲରେ
ସାରା ରାତି କଟିଯାଏ
ଡ୍ରାମା କରିବାରେ ।



Digitized by PPRACHIN, SOA

## ୭୭

ତାରା ସବୁ ଚାଲିଗଲେ
ଆକାଶ ଦେହରୁ
ବିଧବା ବିଧବା ଦିଶେ
ମଝି ଦୁଆରରୁ ।

## ୭୮

କିଛି କିଛି ବାଜେ ଚିନ୍ତା
ବେଳେବେଳେ ଆସେ
ଚାହିଁଲେ କି ନଚାହିଁଲେ
ଭିତରକୁ ଦଂଶେ ।

## ୭୯

ଢ଼ୋକେ ମାତ୍ର ବିଷ ପିଇ
ନେଳି ପଡ଼ିଗଲ
ଦେହର ବନସ୍ତେ ଶୁଭେ
ବାଘର ହେଣ୍ଟାଳ ।

## ୮୦

ସତ ଓଠେ ଆଂକିଦିଅ
ମିଛର ଚୁମ୍ବନ
ପୋଷ ପୋଷ ଶୂନ୍ୟତାରେ
ଭରିଦିଅ ମନ ।



Digitized by PPRACHIN, SOA

## ୮୧

ଏପର୍ଯ୍ୟନ୍ତ ବାସିଶେଯ
ସେମିତି ପଡ଼ିଛି
ବାଘନାହିଁ ମିରିଗଟା
ନାଟ ଲଗେଇଛି ।

## ୮୨

ଅମାନିଆ ଅତୀତର
ପ୍ରାଚୀର ଦେହରେ
ଇତିହାସ ଧକ୍‌କା ଖାଏ
ଶେଷ ମୁହୂର୍ତ୍ତରେ ।

## ୮୩

ଝରଣାଟି ଝରିଆସେ
ପାହାଡ଼ ଖୋଲରୁ
କଥାସବୁ ସରିଆସେ
ଗପ କରୁ କରୁ ।

## ୮୪

ମୁଠା ମୁଠା ଆନଂଦର
ଲୋଭିଲା ଜୀବନ
ଅହରହ ଭାବନାରେ
ଖୋଜେ ସବୁଦିନ ।



Digitized by PPRACHIN, SOA

୮୫

ମନ ମୋ ଡ଼ଂକେଇ ଯାଏ
କଥା ହେଉ ହେଉ
ଭିନ୍ନ ଏକ ପୃଥିବୀରେ
ପାଦ ଦେଉ ଦେଉ ।

୮୬

ଅଧରାତି ଦେବ ଯେବେ
ସ୍ୱପ୍ନ ଅଧା ଅଧା
ଏତେଦିନ ଚଳିବାରେ
କେତେ ଅସୁବିଧା ।

୮୭

ଲୁଚିଯିବ ମିଛ ଗପ
ବୈଠକ ଖାନାରେ
ଘୁଞ୍ଚିଯିବ ଦୀର୍ଘଶ୍ୱାସ
ହାତ ଆଉଁଷାରେ ।

୮୮

କିଛି କିଛି ଶବ୍ଦ ସବୁ
ଅକର୍ମଣ୍ୟ ହେବେ
ଗୀତଟିଏ ଲେଖୁ ଲେଖୁ
ଗପ ଲେଖିଦେବେ ।



Digitized by PPRACHIN, SOA

୮୯

ଆମଘର ଓଳିତଳୁ
ବର୍ଷାଜଳ ପରି
ଆଖିତଳ ଅନ୍ଧାରରୁ
ଲୁହ ଯାଏ ଝରି ।

୯୦

ଅଳସ ଅଳସ ଲାଗେ
ଆଜିର ଦିନଟା
କେତେବେଳେ ବିତିବ ଏ
ଉପରବେଳାଟା ।

୯୧

ପୁରୁଣା ବହିର ପୃଷ୍ଠା
ଚିରିଗଲା ପରି
ତୁମ କଟୁକଥା ଦିଏ
ହୃଦୟ ବିଦାରି ।

୯୨

ସରଗର ମଞ୍ଜି ପୋତି
ସଉଧ ତୋଳିଲି
ସନ୍ତୋଷର ଚାବି ଖୋଲି
ଭିତରେ ପଶିଲି ।



Digitized by PPRACHIN, SOA

୯୩

ଦିନକୁ ପୂର୍ଣ୍ଣତା ଦିଅ
କବିତାକୁ ମନ
ରାତିକୁ ମାନ୍ୟତା ଦିଅ
ଫୁଲକୁ ଫଗୁଣ ।

୯୪

ଭୟଙ୍କର ଶୀତରାତି
ଭୟାତୁର ମୁହଁ
ଡ଼ରି ଡ଼ରି ସବୁକଥା
ଧୀରେ କହିଯାଅ ।

୯୫

ବିତିଗଲା ଦିନପରେ
ଦିନ ମାସ ବର୍ଷ
ଡ଼େରିକଲ କରିବାକୁ
ବିଚାର ବିମର୍ଷ ।

୯୬

ସ୍ୱପ୍ନ ସରିଯାଏ ସିନା
ନିଦ ଭାଂଗେ ନାହିଁ
ସଂଖ୍ୟା ସରିଯାଏ ତାରା
ଗଣିହୁଏ ନାହିଁ ।



Digitized by PPRACHIN, SOA

## ୯୭

ମୁଁ ଜାଣେନି ମୋ 'ଅତୀତ'
ଦୂର 'ଭବିଷ୍ୟତ'
'ବର୍ତ୍ତମାନ' କଥା ହୁଏ
ଖାଲି ମୋ ସହିତ ।

## ୯୮

ଏମିତି ଚାଲିବ ଆଉ
କେତେଦିନ କହ
ଶେଷ ଅଂକ ଶେଷ ଦୃଶ୍ୟ
ବେଳକୁ ପ୍ରଳୟ ।

## ୯୯

ଅଜଣା ଗଛର ପତ୍ର
ପାରେନା ଗୋଟେଇ
ଅତୃପ୍ତ ଆତ୍ମାର କଥା
କହି ନପାରଇ ।

## ୧୦୦

ହସକାନ୍ଦ ରାଗରୋଷ
ମାନ ଅଭିମାନ
କହିବା ଆଗରୁ କିଛି
ହୁଅ ସାବଧାନ ।



Digitized by PPRACHIN, SOA

## ୧୦୧

ନକହିଲେ କହୁଛ ଯେ
କାହିଁ ନ କହିଲି
କହିଲେ ଦେଉଛ ଗାଳି
କାହିଁକି କହିଲି ।

## ୧୦୨

ତୁମେ ତ ଜାଣିଛ ସବୁ
ତଥାପି ମଉନ
ସବୁରି ଆଖିରେ ମୋତେ
କରିଛ ନିଉନ ।

## ୧୦୩

ଯିଏ ଯାହା କହୁପଛେ
ମୁଁ ଯାହା ସେଇଆ
ଜାକିପୋଡ଼ି ଦିଏ ମୋତେ
ଛାତି ତଳ ନିଆଁ ।

## ୧୦୪

ଧର୍ ବୋଲି କହିଦେଲେ
ବାନ୍ଧି ପକାଉଛ
ଆଙ୍ଗୁଠି ଦେଖାଇଦେଲେ
ବାହାଟା ଗିଳୁଛି ।



Digitized by PPRACHIN, SOA

୧

କେଉଁଠି ଆରମ୍ଭ ପୁଣି
କେଉଁଠାରେ ଶେଷ
କେବେ କେବେ ଦୃଶ୍ୟ ହୁଏ
କେବେ ବି ଅଦୃଶ୍ୟ ।

୨

ଆସିବାର ଆଶଙ୍କାରେ
ଚିନ୍ତାଗ୍ରସ୍ତ ହେଲି
ସେତେବେଳେ ନିଜକୁ ବି
ନିଜେ ଭୁଲିଗଲି ।

୩

ଦେହୀରେ ଚିହ୍ନିତ ଦେହ
ସାଧନାର ପୀଠ
ଦେହୀ ଅଟେ ଅମଳିନ
ଦେହଟି କର୍ମଠ ।

୪

ଅବିଚ୍ଛିନ୍ନ ଅନ୍ୱେଷଣ
ଆଶଙ୍କାର ଶେଷ
ଅପର୍ଯ୍ୟାପ୍ତ ଅନୁରକ୍ତି
ଯନ୍ତ୍ରଣା ଅଶେଷ ।



Digitized by PPRACHIN, SOA

୫

ମୁଁ ଫେରିବି ମୋ ଘରକୁ
ଶବଦାହ ସାରି
ମେଞ୍ଚା ମେଞ୍ଚା ବୈରାଗ୍ୟକୁ
ପୁଞ୍ଜିଭୂତ କରି ।

୬

ବଞ୍ଚିବା ମରିବା ପ୍ରତି
ଉଦାସୀନ ଭାବ
ରହିଛି ରହିବ ଜୀବ
ଯେ ପର୍ଯ୍ୟନ୍ତ ଥିବ ।

୭

ଆଶା ଭରସାର ମାୟା
ଲାଗିଛି ମନରେ
ପର ବି ଦିଶେ ଆପଣା
ଭଗ୍ନ ହୃଦୟରେ ।

୮

ଯୁଆଡୁ ଯାହା ପାଇଲି
ସବୁ ଦେଇଦେଲି
ଦିହକ ଯାକରେ ଯାହା
କମାଇ ମୁଁ ଥିଲି ।



Digitized by PPRACHIN, SOA

୯

କାନ୍ଦୁଥିବେ ମୁଣ୍ଡପିଟି
ଜ୍ଞାତି ପରିଜନ
କିଏ କିଏ କରୁଥିବେ
ମୋର ଗୁଣଗାନ ।

୧୦

ମୁଁ ଭୁଲିନି ଏପର୍ଯ୍ୟନ୍ତ
ମୋ ପ୍ରିୟଜନଙ୍କୁ
ଅପେକ୍ଷା କରିଛି ମୋର
ବିଦାୟ ବେଳାକୁ ।

୧୧

ଘରଟିଏ ଗଢ଼ିଥିଲି
ତିମି ଓଳି ତଳେ
ଡ଼ରି ଡ଼ରି ମରୁଥିଲି
ସଦା କାଳେ କାଳେ ।

୧୨

କବାଟକେ କିଳିଦେଲା
ବାହାରୁ ବାହାରୁ
ଚାହୁଁ ଚାହୁଁ ଲୁଚିଗଲା
ଆଖି ସାମନାରୁ ।



Digitized by PPRACHIN, SOA

## ୧୩

କ୍ଷୁଦ୍ର ମରୁଭୂମି ସାରା
ଅମାନିଆ ଶୋଷ
ବଂଚିବାର ଶେଷ ଇଚ୍ଛା
ଅନ୍ତିମ ପ୍ରୟାସ ।

## ୧୪

କବିତାକୁ କୋଳ କରି
ଶବ୍ଦରେ ଖେଳିଲି
କଲମ ମୂନରେ ତାକୁ
ବଂଦୀ କରିଦେଲି ।

## ୧୫

ଯେତେସବୁ ଦୃଶ୍ୟ ଏଠି
ଦୃଷ୍ଟ ହୋଇଯା'ନ୍ତି
ଯେତେସବୁ ସୃଷ୍ଟି ଏଠି
ସ୍ରଷ୍ଟା ଭାବୁଥା'ନ୍ତି ।



Digitized by PPRACHIN, SOA

## ୧୬

ଟୋପାଏ ଲୁହରେ ବାଂଧି
ହୋଇଯାଏ କୋହ
ଦୁନିଆରୁ ତୁଟିଯାଏ
ସବୁ ମାୟା ମୋହ ।

## ୧୭

ବସନ୍ତ ଫେରି ଆସୁଛି
ପୃଥିବୀ ଦେହକୁ
ଗୋଟେଇ ପୋଟେଇ ସବୁ
ଠିକ୍ କରିବାକୁ ।

## ୧୮

ସମୟ ବି ଅଂଧ ହୁଏ
ବେଳେବେଳେ ଏଠି
କାହାକୁ ରଖି କାହାକୁ
ନେବଟି ସାଉଁଟି ।



Digitized by PPRACHIN, SOA

## ୧୯

ଚାରିକଡ଼ ଶୂନ୍ୟତାରେ
ଜଳିପୋଡ଼ିଯାଏ
କେଉଁଠାରେ ଥାଏ ପୁଣି
କେଉଁଠି ନଥାଏ ।

## ୨୦

ମାୟାରେ ମୋହିତ ମନ
ବୋଲ ମାନୁନାହିଁ
କର୍ମ ସେ କରୁଛି ନିଜ
ଇଚ୍ଛା ଅନୁଯାୟୀ ।

## ୨୧

ମୋହ ମାୟା ବନ୍ଧନରେ
ବିଚରା ମଣିଷ
ଅମୃତ ଜୀବନ ତା'ର
ହୋଇଯାଏ ଶେଷ ।



Digitized by PPRACHIN, SOA

୧

ପାଦରେ ଲୁଚାଇ ଦେଲେ
ଚାଲୁଥିବା ବାଟ
ଖୋଜି ଖୋଜି ହୁଅନ୍ତି ମୁଁ
ଖାଲି ଛଟପଟ ।



Digitized by PPRACHIN, SOA

୧

ସୁନାରଂଗ ସୂର୍ଯ୍ୟାସ୍ତରେ
ଏ କି ବିପର୍ଯ୍ୟୟ
ଛାଇଯାଏ ସୂର୍ଯ୍ୟମୁଖୀ
ଅପରାଧୀ ମୁହଁ ।

୨

ଆତ୍ମା ହୁଏ ଛଟପଟ
ଶେଷ ନିଶ୍ୱାସରେ
ଯନ୍ତ୍ରଣାର ଜତୁଗୃହ
ଜଳିଯିବା ପରେ ।

୩

ସଂପର୍କର ଅଧିକାର
କେତେ ଅନ୍ତରଂଗ
ବେଳାଭୂମି ଛୁଇଁଯାଏ
ଯେସନେ ତରଂଗ ।



Digitized by PPRACHIN, SOA

୪

ଅବସନ୍ନ ଆଖିଧାରେ
ଲୋତକର ଚିହ୍ନ
ସୀମାହୀନ ସମୟରେ
ବ୍ୟସ୍ତ ଅପରାହ୍ନ ।

୫

ଫେରିବାର ଫାଟକରେ
ଲାଗିଅଛି ତାଲା
ଭିତରଟା କୋଳାହଳ
ଖାଲି ବିଶୃଙ୍ଖଳା ।

୬

ସୁଖର ସେ ସୂର୍ଯ୍ୟାଲୋକ
ହୃଦୟକୁ ଛୁଏଁ
କ୍ରୋଧାନ୍ୱିତ ଚାହାଣୀରେ
ଜାଳିପୋଡ଼ି ଦିଏ ।



Digitized by PPRACHIN, SOA

୭

ଡାହା ମିଛ ଡ଼ହରାମି
ଡ଼ରାଉଛି ଡ଼ର
ପାପୁଲିଏ ପାଗଳାମି
ପାପର ସହର ।

୮

ଏ କେଉଁ ଦେହର ଦୁର୍ଗ
କିମ୍ବା ବନ୍ଦୀଘର
ଏ କେଉଁ ଦିଅଁ ଦେଉଳ
କିମ୍ବା ସ୍ୱର୍ଗଦ୍ୱାର ।

୯

ଚାରିଆଡ଼ ଓଦା ଓଦା
ବର୍ଷା ଅସରାଏ
ପୋଛୁ ପୋଛୁ ଆଖିପତା
ଦିନ ସରିଯାଏ ।



Digitized by PPRACHIN, SOA

୧୦

ମନେନାହିଁ ଜନ୍ମଦିନ
ତାରିଖ ନା ତିଥି
ଦିନ ସରିଯାଏ ସିନା
ପାହେନି ସେ ରାତି ।

୧୧

ହିଡ଼ରୁ ହଡ଼ପ ହୁଏ
ଶାଗ ଜାତି ଜାତି
ଓଳେଇ ଗାଈଟା ଯୋଗୁ
ସହେ ସବୁ କ୍ଷତି ।

୧୨

ମାଟି ଫାଟି ଆଁକରେ
ଅସହ୍ୟ ସେ ତାତି
କେଡ଼େ ବେଗେ ମାଡ଼ିଆସେ
ଅନ୍ଧାକାର ରାତି ।



Digitized by PPRACHIN, SOA

## ୧୩

ମଲ୍ଲିଫୁଲ ମହକରେ
ହୁଏ ମୁଁ ଉଚ୍ଚାଟ
ମହ ମହ ବାସିଉଠେ
ମୁଲକ ଗୋଟାକ ।

## ୧୪

ଆହାଟିକେ କହିବାକୁ
ସାହାନାହିଁ କେହି
ଆବୋରି ବସିଛି ସବୁ
କାହିଁ ନିଜ ପାଇଁ ।

## ୧୫

କାନ୍ଧରେ ପଇତା ତୁମ
ପଇତାରେ କଂଚି
ଜହ୍ନଠାରୁ ଜ୍ୟୋସ୍ନାଆଣି
ଦିଅ ଦେହେ ବିଞ୍ଚି ।



Digitized by PPRACHIN, SOA

## ୧୬

ଝଡ଼ରେ ଉପୁଡ଼ି ଯାଏ
ବଡ଼ବଡ଼ ଗଛ
ଯିବ ଯିବ କହି ପୁଣି
ଏଯାଏଁ ରହିଛ ?

## ୧୭

ଫିଙ୍ଗିଦିଅ ମୋ ଦେହରୁ
ଦରଶୁଖା ଛାଇ
କାଚର ଝରକା ଦେଇ
ସବୁଦିନ ପାଇଁ ।

## ୧୮

ସାଇତି ରଖିଛି ତୁମ
ପାଇଁ କେତେଦିନ
ସେ ଦିନରେ ବଂଧା ମୋର
ପ୍ରକୃତ ଜୀବନ ।



Digitized by PPRACHIN, SOA

୧

କିଏ ସିଏ ପୋଛିନେଲା
ସକାଳ ସମୟ
କାହାଦାଣ୍ଡ ଏତେ ବେଗି
କୋଳାହଳମୟ ।



Digitized by PPRACHIN, SOA

୧

ମୋ ପରି ଅନାଥଟିଏ
କାହିଁ ଜନ୍ମ ନେଲା
ଜୀବ ଥାଉ ଥାଉ ସିଏ
କାହିଁକି ନମଲା ।

୨

ସଂସାର ଯାକର ଚିନ୍ତା
କାହିଁ ମୋତେ ଦିଅ
ଯେମିତି ପାରୁଛ ମୋତେ
ସେମିତି ନଚାଅ ।

୩

ପ୍ରତିଶୋଧ ପରାୟଣ
କାହିଁ ହୋଇଯାଅ
ଯଦିବା ମୁଁ ଭୁଲ କଲି
କ୍ଷମା କରିଦିଅ ।



Digitized by PPRACHIN, SOA

୪

ଏତେକରି କହିଥିଲି
ଆସିବାକୁ ଥରେ
ଆସିଲେ ଆସିବ ଅବା
ମରିଯିବା ପରେ ।

୫

ଭୋକଥାଇ ରୁଚୁନାହିଁ
ଖାଇବାକୁ ମୋତେ
ତୁମେ ଯିବା ପରଠାରୁ
ଦୂରରେ ସମସ୍ତେ ।

୬

ଦୁଲୁକି ଯାଉଛି ପୃଥ୍ୱୀ
ତୁମେ ନଥିଲାରୁ
ଲିଭିଗଲା ଇନ୍ଦ୍ରଧନୁ
ଆକାଶ ଦେହରୁ ।



Digitized by PPRACHIN, SOA

୭

ବାପା ହୋଇ ଯେବେ ତୁମେ
କିଛି ଭୁଲ୍ କର
ପୁଅ ହୋଇ ଭୁଲିଯାଏ
ଅସ୍ତିତ୍ୱ ମୋହର ।

୮

ଜାଣି ଜାଣି ପଚାରୁଛ
ସବୁ ତ ଜାଣିଛ
ଗଣି ଗଣି ଦିନ ସବୁ
ସାରି ଦେଇଅଛ ।

୯

ମୁଁ ଜାଣିଛି ବୋଉ ମୋର
ନିକଟରେ ଅଛି
କୋଉ ତା ପାଖକୁ ନିତି
ଯାଇ ବା ପାରୁଛି ।



Digitized by PPRACHIN, SOA

୧୦

କେତେ 'ହଁ' ଆଉ 'ନାହିଁ'ରେ
ଚାଲିଛି ସଂସାର
'ହଁ'କୁ 'ନାହିଁ' କଲେ ତୁମେ
କେଡ଼େ ଭୟଙ୍କର ।

୧୧

ଛୋଟ ଛୋଟ କଥାରେ ଯେ
କାହିଁକି ରାଗୁଛ
କିଏ କିଛି ପଚାରିଲେ
ଆଖି ଦେଖାଉଛ ।



Digitized by PPRACHIN, SOA

୧

କଂସା କବାଟକୁ ଖୋଲି
ଚାହେଁ ଧୀରେ ଧୀରେ
କାଲେ ମୋର ଦେଖାହେବ
ତା' ଦାଣ୍ଡ ଦୁଆରେ ।

୨

ମୁଁ ଜାଣିଛି କେଉଁଦିନ
କେତେବେଳେ ଥିବି
କଥାଦେଇ କଥାମୋର
ନିଶ୍ଚୟ ରଖିବି ।

୩

କିଏ ଆସିବାର ଶବ୍ଦ
ଶୁଭୁଚି ଦୂରରୁ
ଲାଗୁଛନ୍ତି ସିଏ ତାଙ୍କୁ
ଦେଖିବା ପୂର୍ବରୁ ।



Digitized by PPRACHIN, SOA

୪

କିଏ ଆସିବାର ଶବ୍ଦ
ଶୁଭୁଚି ଦୂରରୁ
ଲାଗୁଛନ୍ତି ସିଏ ତାଙ୍କୁ
ଦେଖିବା ପୂର୍ବରୁ ।

୫

ଏପର୍ଯ୍ୟନ୍ତ ଡ଼ାକୁଛି କେ
ତୁମରି ସ୍ୱରରେ
ଯିବି କି ନଯିବି ଭାବେ
ଶେଷ ମୁହୂର୍ତ୍ତରେ ।

୬

ସମୟ ଦେଇଛି ଖଞ୍ଜି
ଧ୍ୱନି ପ୍ରତିଧ୍ୱନି
ଗଛ ଡ଼ାହିରେ ଝୁଲୁଛି
ଅସ୍ପଷ୍ଟ ରାଗିଣୀ ।



Digitized by PPRACHIN, SOA

୭

ଅତୃପ୍ତ ଆଖିରେ ଭରି
ନୀଳ ନିରବତା
କଥା ପଦେ କହିଦେଲେ
କାଳେ ଆସିଥା'ନ୍ତା ।

୮

ନିଆଁ ନାହିଁ କେଉଁଆଡ଼େ
ଖାଲି ଧୂଆଁ ଦିଶେ
ଶବ୍ଦମାନେ ଝୁଣ୍ଟୁଥାନ୍ତି
ଓଠର ଆକାଶେ ।

୯

ତୋ ଛାତିରେ ଜଳୁଅଛି
ହୁତୁ ହୁତୁ ନିଆଁ
ସେଥିପାଇଁ ତୋତେ ଦେଖି
ସମସ୍ତେ ଛାନିଆଁ ।



Digitized by PPRACHIN, SOA

## ୧୦

ମୋତେ କାହିଁ ଆଜି ଲାଗେ
ଉଦାସ ଉଦାସ
ମୋ ଭିତର କରୁନି ତ
ମୋତେ ଉପହାସ ।

## ୧୧

ମୁଁ ଡ଼ରିଲେ ଡ଼ରଉଛି
ମୋତେ ମୋର ଛାଇ
ସେ ଆସୁଛି ସତେ ମୋତେ
ଗୋଡ଼େଇ ଗୋଡ଼େଇ ।



Digitized by PPRACHIN, SOA

୧

ମୋର ତ ଅଜସ୍ର ଇଚ୍ଛା
ତୁମ ଦରବାରେ
ଘନଘୋର ଘନିଷ୍ଠତା
ସମୟ ହାତରେ ।

୨

କଥା କୁହ ଗୀତ ଗାଅ
ନାଚ ଧୀରେ ଧୀରେ
ସୂର୍ଯ୍ୟ ଯେବେ ଅସ୍ତଯାନ୍ତି
ମଥାନ ଉପରେ ।



Digitized by PPRACHIN, SOA

୩

ତୁମ ଅପେକ୍ଷାରେ ଅଛି
କେବେକୁ ଆସିବ
ଜୀବନର ପ୍ରଥମ ଅନ୍ଧାର
ଆଲୋକିତ ହେବ ।

୪

ଯାତ୍ରା ତୁମ ଶୁଭ ହେଉ
ଏତିକି କାମନା
ଶୀଘ୍ର ଶୀଘ୍ର ଫେରିଆସ
ନପାଇ ଯନ୍ତ୍ରଣା ।



Digitized by PPRACHIN, SOA

୧

ଅପରାଧ ଅନ୍ଧାରରେ
କେତେ ଦୁର୍ଘଟଣା
ଚାହିଁଲେ ବି ପାଏ ନାହିଁ
ସାମାନ୍ୟ ସୂଚନା ।

୨

ତୁମକୁ ଖୋଜେ ମୁଁ ତୁମେ
ବୁଲୁଛ ପଦାରେ
ଦର୍ଜା ବନ୍ଦ କରିଦେବି
ସାଢ଼େ ନଅଟାରେ ।

୩

ଉଠେଇ ଆସୁଚି ମେଘ
ଉତ୍ତର ଆକାଶୁ
ଚାଳ ବାଜିଲାଣି ମୁଣ୍ଡେ
ଘରେ ପଶୁ ପଶୁ ।



Digitized by PPRACHIN, SOA

୪

ଭଲ ଲାଗେ ପଢ଼ିବାକୁ
ଚିରା ରଫ୍ ଖାତା
ପୁରୁଣା ଅକ୍ଷର ସବୁ
ସେଥିରେ ସାଇତା ।

୫

ଦୃଶ୍ୟ ତ ବଦଳି ଯାଏ
ଆଖି ବଂଦ କଲେ
ମନ ତ ଚହଲିଯାଏ
ଆଖି ଖୋଲି ଦେଲେ ।



Digitized by PPRACHIN, SOA

୧

ଭାରି ଭାରି ଲାଗେ ଏଠି
ସମ୍ପର୍କର ସ୍ୱର
ସରିସରି ଯାଏ ଦିନ
ନିହାତି ନିଜର ।

୨

ପବନର ପାଲିଙ୍କିରେ
ଆସେ ବର୍ଷାରାଣୀ
ବଳେବଳେ ବର୍ଷିଯାଏ
ସତେ ମନକାଣି ।

୩

ମାଟିଦେହ ମିଶିଯାଏ
ମାଟିର ଦେହରେ
ଛାଡ଼ିଯାଏ ଯଶକୀର୍ତ୍ତି
ବିଶ୍ୱ ଦରବାରେ ।



Digitized by PPRACHIN, SOA

୪

ମାଟି ଭିଜେ ବରଷାରେ
ସ୍ୱପ୍ନେ ଭିଜେ ମନ
ଲାଜେ ଭିଜେ ପ୍ରତିରାତି
ଭିଜେ ପ୍ରତିଦିନ ।

୫

ଦରଶୁଖା କ୍ଷତଟିଏ
ବେଦନାରେ ଭରା
ଦରଫୁଟା ଭାତଗଣ୍ଡେ
ଭୋକିଲାକୁ ଲୋଡ଼ା ।

୬

ଜାବୁଡ଼ି ଧରିଛି ସିଏ
ଶରୀରକୁ ମୋର
ଗୋଡ଼ରେ ଛନ୍ଦିଛି ଗୋଡ଼
ସୁଖୀ ସୌଦାଗର ।



Digitized by PPRACHIN, SOA

୭

ମେଘ ଦେହେ ବର୍ଷାଜଳ
ଲୁଚିଗଲା ପରି
ଲାଜଟୋପେ ଲୁଚିଯାଏ
ଓଠରେ ତୁମରି ।

୮

ମୋର ସେ ବିକୃତ ଛବି
କାହିଁ ଆଙ୍କି ଦେଲ
ଜହ୍ନ ନାହିଁ ଆକାଶରେ
କାଳେ କଇଁଫୁଲ ।

୯

ତୁମଲାଗି କାନ୍ଦୁଥିଲି
କେତେଦିନ ଧରି
ତୁମେ ଚାଲିଗଲ ମୁଁ ଯେ
ମରେ ଝୁରି ଝୁରି ।



Digitized by PPRACHIN, SOA

୧୦

ମିଠକଥା କହି ମନ
ମୋହିଦେଲ ମୋର
ଜାଣିନାହିଁ ମିଶାଇଛ
ମୁଠାଏ ଜହର ।

୧୧

ପବନର ପାଟି ଥିଲେ
ସେ କହନ୍ତ କଥା
ମମତାର ମାଟିଥିଲେ
ଫସଲ ଫଳାନ୍ତା ।

୧୨

ଦୁବଘାସ ଓଠଦେହେ
କାକର ଲାଗିଛି
କୋହଲା ପାଗରେ ଦେହ
ଶୀତେଇ ଯାଉଛି ।



Digitized by PPRACHIN, SOA

## ୧୩

ଶୁଖିଲା ନଦୀଟି ଖୋଜେ
ସ୍ରୋତ ତା ଦେହରେ
ଅବୁଝା ମନଟି ମରି
ଯାଏ ଧୀରେ ଧୀରେ ।

## ୧୪

ଅଶାନ୍ତ ଝଡ଼ର ଦେହେ
କାନ୍ଦ କାନ୍ଦ ମନ
ସୂର୍ଯ୍ୟକୁ ଲୁଚାଇ ଦିଏ
କାନ୍ଦେ ପଦ୍ମବନ ।

## ୧୫

ଭୋକ ଶୋଷ କିଛି ନାହିଁ
ତୁ ଆସିବା ପାଇଁ
ଗୋଡ଼ ବି ଲାଗୁନି ତଳେ
ତୋତେ ଦେଖିଦେଇ ।



Digitized by PPRACHIN, SOA

## ୧୬

କହିଦେଲେ ସରିଯାଏ
ତୁମ ମନକଥା
ସେଣିକି ସେ କରୁପଛେ
କାହା ମୁଣ୍ଡ ବ୍ୟଥା ।

## ୧୭

କହୁଛି ମୁଁ ମନଖୋଲି
ଅଂଗେ ନିଭା କଥା
ତୁମେ ଦେଉଥିଲ କାହିଁ
ନିତି ମୁଣ୍ଡ ବ୍ୟଥା ।

## ୧୮

କଅଣ ପାଇଲ ଲାଭ
ମୁକ କରିଦେଇ
ନିତି ନିତି ବଚସାରୁ
କଳି ଉପୁଜାଇ ।



Digitized by PPRACHIN, SOA

୧

ଭରସାର ଭାରସାମ୍ୟ
ହରାଇ ବସିଲେ
ନିରୁତ୍ତର ନିରବତା
ଦୁଃଖଦେଇ ଚାଲେ ।

୨

ତୁମେ ଆଦି ତୁମେ ଅନ୍ତ
ଜୀବନ୍ତ ଈଶ୍ୱର
ଶରଧା ଓ ସବୁରୀର
ସବୁଜ ସ୍ୱାକ୍ଷର ।

୩

ସକଳ ଶକ୍ତିର ଉତ୍ସ
ଆହେ ଭାବମୟ
ଭାବର ମନ୍ଦିରୁ ତବ
ଭାବର ଉଦୟ ।

୪

ସର୍ବହରା ଯୋଗୀ ତୁମେ
ସବୁତ ଜାଣୁଛ
ମାଗି ଯାଚି ଆଣିସବୁ
ଦେଇ ଦେଉଅଛ ।



Digitized by PPRACHIN, SOA

୫

ମାୟାରେ ମୋହିତ ମନ
ବିକ୍ଷିପ୍ତ ଭାବନା
ଆନ୍ଦୋଳିତ କରେ ତାକୁ
କାମନା ବାସନା ।

୬

ଦେଉଳ ଦୁଆରେ ମୋର
ଦିନରାତି କଟେ
ଦିଅଁଙ୍କ ଗମ୍ଭୀରା ସତେ
ସରଗ ପାଲଟେ ।

୭

ଭକ୍ତିର ମାର୍ଗରେ ମୋର
ଏକା ଏକା ମୁହିଁ
ପଡ଼ିଉଠି ନିଜକୁ ମୁଁ
ରୋକିପାରେ ନାହିଁ ।

୬

ମନେପଡ଼େ ଈଶ୍ୱରଙ୍କ
ଜ୍ୟୋତିର୍ମୟ ମୁହଁ
ଭକ୍ତିର ଭାବରେ ବଂଧା
ଶ୍ରଦ୍ଧା ଓ ସେନେହ ।



Digitized by PPRACHIN, SOA

୭

ତ୍ରିଭଙ୍ଗୀ ଠାଣିରେ ତୁମେ
ଦିଶକି ସୁନ୍ଦର
ଯମୁନା କୂଳରେ କାହ୍ନା
କେବଳ ରାଧାର ।

୮

ଯୋଡ଼ା ଆଷାଢ଼ରେ ତୁମେ
ବେଶ ବଦଳାଅ
ଦୁନିଆକୁ ଦିଅ ତୁମ
ନୂଆ ପରିଚୟ ।

୯

ତୁମକଥା ଶୁଣିବେନି
ଏକାକୀ ଈଶ୍ୱର
ସମୂହ ପ୍ରାର୍ଥନା କରି
ଡାକ ବାରମ୍ବାର ।



Digitized by PPRACHIN, SOA

## ୧୦

ପଥର ଦେହରେ କିଏ
ଲେପିଲା ସିନ୍ଦୁର
ପତକାଟେ ପୋତି ଦେଇ
କହିଲା ଠାକୁର ।

## ୧୧

ଚଉରାର ଚାରିପାଖେ
ଓଳେଇ ଦେଖୁଛି
ଭକ୍ତିଭାବ ପସରାରେ
ତୁଳସୀ ବାସୁଛି ।

## ୧୨

ଭାବିଲେ ହେଉଛି ଘାରି
ଅତୀତକୁ ମୋର
ବାପା ମା' ସବୁକିଛି
ଚଳନ୍ତି ଈଶ୍ୱର ।



Digitized by PPRACHIN, SOA

୧

କ୍ରୋଧ ଜର୍ଜରିତ ମୋର
ସମସ୍ତ ଶକତି
ଅବିଳମ୍ବେ ଦେଇଦେଲି
ତୁମ ହାତେ ଟେକି ।

୨

ତୁହି ମୋର ଆଶ୍ରା ଅଟୁ
ତୁହି ମୋ ଭରସା
ଭଲଭାବେ ପଢ଼ିପାରେ
ତୋ ଅନ୍ତର ଭାଷା ।



Digitized by PPRACHIN, SOA

୧

ଉତ୍ତେଜିତ ଅନୁତାପ
ବ୍ୟସ୍ତ ଅନୁଭୂତି
ସମ୍ମୋହିତ ସମ୍ପର୍କର
ସ୍ୱପ୍ନାବିଷ୍ଟ ରାତି ।

୨

କାଣିଚାଏ ସୁଖ ପାଇଁ
କଅଣ ମୁଁ କଲି
ନିଜର ନିଜର କହି
ନିଜେ ଭୁଲିଗଲି ।

୩

ଏତେବଡ଼ ଯୁଦ୍ଧ ପରେ
ହୁଏ ନିର୍ବାସିତ
ରାଜଗାଦି ସ୍ୱପ୍ନ ହୁଏ
ମରିବା ପର୍ଯ୍ୟନ୍ତ ।



Digitized by PPRACHIN, SOA

୪

କେଉଁ ଅପରାଧେ ମୋର
ଦିଅ ଅଭିଶାପ
କାହିଁ କଲି ଛତ୍ରଭଙ୍ଗ
କରେ ପଶ୍ଚାତାପ ।

୫

ସବୁ ଘଟିଗଲା ପରେ
ଆସିଲେ କି ହେବ !
ଚୋର ପଳାଇଲା ପରେ
ବୁଦ୍ଧି ଦେଖାଯିବ ।



Digitized by PPRACHIN, SOA

୧

କାକୁତି ମିନତି କରେ
କଂଚା ଦୁବଘାସ
ଉପାଡ଼ି ଦିଅନା ମୋତେ
କରନାହିଁ ଶେଷ ।



Digitized by PPRACHIN, SOA

୧

ଛାଇ ସଂଜ ଆସିଯାଏ
ଖରାବେଳ ପରେ
ଗହମ ନିଦରେ ଗାଆଁ
ସତେ ଶୋଇପଡ଼େ ।

୨

ବହଲେ ବଉଦ ତଳୁ
ବର୍ଷା ମାଡ଼ିଆସେ
ବର୍ଷିଗଲେ ଚାରିଆଡ଼
ଭାରି ଫର୍ଚ୍ଚା ଦିଶେ ।
ବାଟ ଛାଡ଼ିଦିଏ ।

୩

ଶୋକକୁ ସମର୍ପି ଦେବି
ସବୁ ଅନୁଭୂତି
ବିଚ୍ଛେଦର ବିଷାଦରେ
ଜଳୁଥିବି ନିତି ।

୪

କିଛି କ'ଣ ହୁଏ ଏଠି
କିଏ ଚାହିଁବାରେ
ନିୟତିକୁ ନେବ କିଏ
ଇଛା ଅନୁସାରେ ।



Digitized by PPRACHIN, SOA

୫

ଆକାଶର ଚାରିଆଡ଼େ
ଲାଲ୍ ଘୋଟିଯାଏ
ଆସୁଛି ଅଶାନ୍ତ ଝଡ଼

୬

ମନର ମୋ ପ୍ରଜାପତି
ଅନେକ ରଂଗରେ
ଉଡ଼ିବୁଲେ ଏଠିସେଠି
ମହୁ ଶୋଷିବାରେ ।

୭

ମନର ମୋ ପ୍ରଜାପତି
ଅନେକ ରଂଗରେ
ଉଡ଼ିବୁଲେ ଏଠିସେଠି
ମହୁ ଶୋଷିବାରେ ।

୮

ତୁମେ ଯା'କୁ ଘର କୁହ
ମୋ ପାଇଁ ନରକ
ତୁମର ଗୋଲାପ ମୋର
ପାଇଁ ବାଇଡ଼ଙ୍କ ।



Digitized by PPRACHIN, SOA

## ୯

ଜାଗ୍ରତ ପ୍ରହରୀ ଭଳି
ଛାଇ ଜଗିଥାଏ
ଅନ୍ଧାର ଘୋଟି ଆସିଲେ
ସିଏ ଲୁଚିଯାଏ ।

## ୧୦

କେତେ ଗଡ଼ା ଖାଇ ଖାଇ
ମୁଁ ବାଲିଗରଡ଼ା
କେତେ କେତେ ଜାଗା ବୁଲି
ମୁଁ ହାଟ ବାହୁଡ଼ା ।

## ୧୧

ଯିବା ସରିଯିବ ସିନା
ରାସ୍ତା ସରିବନି
ବାଡ଼ି ଭାଙ୍ଗିଯିବ ସିନା
ସାପ ମରିବନି ।

## ୧୨

ଓଠରୁ ଓହଳି ପଡ଼େ
ଶବ୍ଦ ପାରିଜାତ
ମନ ମୋହିଦିଏ ମୋର
ସୁବର୍ଣ୍ଣ ସଂଗୀତ ।



Digitized by PPRACHIN, SOA

## ୧୩

କଥାତ ବଦଳି ଯାଏ
ତୁଣ୍ଡରୁ ତୁଣ୍ଡରୁ
ଧୈର୍ଯ୍ୟ ନାହିଁ ତାକୁ ଆଉ
ଦୋହରାଇବାକୁ ।

## ୧୪

ଗୋଟେ ପରେ ଗୋଟେ ଚିତ୍ର
ଆଙ୍କିଦେଲା ପରେ
ଚିତ୍ରକର ହଜିଯାଏ
ନୂଆ କଳ୍ପନାରେ ।

## ୧୫

ଅନ୍ତହୀନ ଅନ୍ଧାରରେ
ଶୂନ୍ୟର ପସରା
ସୀମାହୀନ ଆକାଶରେ
ଲୁପ୍ତ ଧ୍ରୁବତାରା ।

## ୧୬

ଚିତ୍ର ମୁଁ ଆଙ୍କିଲି ଯାହା
ରଂଗ ସବୁ ଦେଇ
ସେ ସବୁ ଜୀବନ୍ତ ହେଲେ
ସବୁଦିନ ପାଇଁ ।



Digitized by PPRACHIN, SOA

## ୧୭

ଓଦା ପାଦ ଓଦା ମନ
ସବୁ ଓଦା ଓଦା
ଓଦା ରାତି ଅଂଧାରରେ
ଭୋଗେ ଅସୁବିଧା ।

## ୧୮

କାହାକୁ ଅପେକ୍ଷା କରେ
ଆଜି ଖରାବେଳ
ଚାରିଆଡ଼େ ପୋଡ଼ାଜଳା
ଖାଲି ଗଂଡ଼ଗୋଳ ।

## ୧୯

ପରିସ୍ଥିତି ବିଷମୟ
କାହିଁକି କହିଲ
ବେଳ ଥାଉ ଥାଉ କାହିଁ
ସବୁ ନକହିଲ ।

## ୨୦

ପରିଚିତ ପାଦଚିହ୍ନ
ଚିହ୍ନା କଣ୍ଠସ୍ୱର
କାନରେ ସେ କହିଦିଏ
ଆପଣା ଓ ପର ।



Digitized by PPRACHIN, SOA

## ୨୧

ଛାତିର କଂପନ ତଳେ
ଅଦୃଶ୍ୟ ଅଂଧାର
ଜାଳିପୋଡ଼ି ହୃଦୟକୁ
କରେ ଛାରଖାର ।

## ୨୨

ନାହିଁ ନାହିଁ କରନାହିଁ
ପ୍ରତିଟି କଥାରେ
କେମିତି ସଫଳ ହେବ
ପ୍ରତିଦ୍ୱନ୍ଦ୍ୱିତାରେ ।

## ୨୩

ଭାବନାରେ ଭୟ ଆସି
ବ୍ୟତି ବ୍ୟସ୍ତ କରେ
ଛଳନାରେ ଛଟପଟ
ହୃଦୟଟା ଥରେ ।

## ୨୪

ଅହିଂସାର ଆଦର୍ଶରେ
ରଚିଲେ ବିପ୍ଳବ
ପୁଞ୍ଜିଭୂତ ଶକ୍ତି ତାକୁ
ଜିତାଇ ଯେ ଦେବ ।



Digitized by PPRACHIN, SOA

୧

ବିଦ୍ରୋହ ତ ବାରଂବାର
ବିଧାତା ସାଂଗରେ
ସୁନିଶ୍ଚିତ ପରାଜୟ
ଥିଲା କପାଳରେ ।

୨

ବିଧାତା ଗଢ଼ିଛି ତାକୁ
ଅଲଗା ପ୍ରକାରେ
ଦୁର୍ଭାଗ୍ୟ ଲାଗି ରହିଛି
ସବୁ ସମୟରେ ।

୩

ତୁମେ ତ ବୁଝିଲ ନାହିଁ
ଦୁର୍ଭାଗ୍ୟକୁ ମୋର
ଛଟପଟ ଅନ୍ତରାତ୍ମା
ବିଳମ୍ବିତ ସ୍ୱର ।



Digitized by PPRACHIN, SOA

୪

ଏକା ଏକା ଚାଲୁଥିବା
ପିମ୍ପୁଡ଼ିଟି ପରି
ଚିରକାଳ ବୁଲୁଥିବି
ଭାଗ୍ୟକୁ ଆଦରି ।

୫

କେତେ ଇଚ୍ଛା ମରିଯାଏ
ଅର୍ଦ୍ଧିତ ଆଖିର
କେତେ ସ୍ୱପ୍ନ ସରିଯାଏ
ମୋ ପରମାୟୁର ।

୬

ଫୁଲର ଦରୋଟି ହସ
ଛୋଟ ପିଲା ପରି
ମୋ ଭାଗ୍ୟଟି କାହିଁ କିନ୍ତୁ
ସାଜିଛି ଭଗାରୀ ।



Digitized by PPRACHIN, SOA

କବିଙ୍କର ଅନ୍ୟାନ୍ୟ ସାରସ୍ୱତ କାବ୍ୟ ସମ୍ଭାର :

୧. ସମୟର ସ୍ୱର
୨. [illegible]
୩. ବିବର୍ଣ୍ଣ ବସୁଧା
୪. ସାଇ ନାମ କେବଳମ୍
୫. ଝରି ଝୁରିଯାଏ
୬. ଫର୍ଦ୍ଦା ଖୋଲୁ ଖୋଲୁ



Digitized by PPRACHIN, SOA



କବି ଡ.ଗୋବିନ୍ଦ ଚନ୍ଦ୍ର ଦାଶ ଭାଷା ଓ ଭାବନାର ସମୁଦ୍ରରେ କାବ୍ୟଦ୍ୱୀପ ସୃଷ୍ଟି କରିବାରେ ଏକ ସୁଦକ୍ଷ ବିଧାଣୀ । ତାଙ୍କର ଏଯାବତ୍ ଛଅଟି କବିତା ସଂକଳନ ପ୍ରକାଶିତ । ତାଙ୍କର ସମସ୍ତ ଲେଖାଗୁଡ଼ିକ ଜୀବନଧର୍ମୀ ଓ ବାସ୍ତବଧର୍ମୀ । ଉକ୍ତ ଏକପଦୀ ସଂକଳନ 'ଜହ୍ନ ଜହ୍ନ ମନ'ଟି ତାଙ୍କର ସଫଳ, ସାର୍ଥକ, ଅନବଦ୍ୟ ସୃଷ୍ଟି । ସରଳ, ସାବଲୀଳ, ବୋଧଗମ୍ୟ ଭାଷାରେ କବି ରୁଚି ରଖନ୍ତି ଓ ସୃଷ୍ଟି କରନ୍ତି କାବ୍ୟ ଜଗତର ସଫଳ ରୂପକାର ରୂପେ ପାଁଶହ ଏକପଦୀ । ଗୀତିମୟତା ତାଙ୍କ ଜୀବନର ସ୍ୱରଲିପି । ଏକପଦୀ ଗୁଡ଼ିକ ଭିନ୍ନ ଭିନ୍ନ ସ୍ୱାଦର ଓ ଏଥିରେ ଭରିରହିଛି ପ୍ରେମ, ବିରହ, ମିଳନ, ବିଚ୍ଛେଦ, ସ୍ୱପ୍ନ, ସମ୍ଭାବନା, ଅନୁଭବ, ଅନୁରାଗ ଆଦି ଶବ୍ଦ ସମୂହ ଭିତରେ ଆତ୍ମଗୋପନ କରିଥିବା କାବ୍ୟକଳାର ଆତ୍ମଲିପି । ସଂକଳନଟି ପାଠକ ମହଲରେ ଆଦୃତ ହେବ ବୋଲି ଆଶା ଓ ବିଶ୍ୱାସ ।

- ପ୍ରକାଶକ



ପ କ୍ଷୀ ଘ ର ପ୍ର କା ଶ ନୀ



9788190708037

JAHNA JAHNA MANA
Lyrics Collection
by Gobinda Chandra Das

A Pakshighar Publication 2017

₹200.00

Digitized by PPRACHIN, SOA